# ଶିଶୁର ଯତ୍ନ
# ଓ
# ପ୍ରାକ୍-ବିଦ୍ୟାଳୟ ପରିଚାଳନା

(ମୌଳିକ ପାଠ୍ୟକ୍ରମ)



ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ
ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ଶିଶୁର ଯତ୍ନ ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା

(ମୌଳିକ ପାଠ୍ୟକ୍ରମ)

( ଧନ୍ଦାମୂଳକ +୨ ଶ୍ରେଣୀ ନିମନ୍ତେ )

ରଚନା ଓ ସମ୍ପାଦନା :

ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଓ ରାଜ୍ୟ ଶିକ୍ଷା
ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ଦ୍ୱାରା ନିଯୁକ୍ତ
ଲେଖକ ଓ ସମ୍ପାଦକ ମଣ୍ଡଳୀ

୧୯୯୪



ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# CRECHE AND PRE-SCHOOL MANAGEMENT

( Basic Foundation Course )

( For +2 Vocational Students )

*Writen by*

1. Prof. Satrughna Nath, Retired Professor of Education,
2. Dr. Bhagyadhara Mohanty, Reader, (Edn.)
3. Dr. Udayanath Dash, Reader, on Psychology, (U.U.)
4. Dr. Pratap Kumar Rath, Lecturer, on Psychology, (U.U.)
5. Dr. Purna Chandra Mishra, Lecturer, T.E. (Edn.)
6. Sri Indubhusan Mishra, Rtd. Dy. Director, Sec. Edn.
7. Dr. Kamala Das, Minister, Health and Family Welfare
8. Dr. S. S. Mohapatra, Pediatries
9. Smt. Kasturi Mohapatra, Director, Open Learning System, Bhubaneswar.
10. Dr. Haripad Acharya, Instructor, S.I.R.D, BBSR.
11. Miss P. S. Otta, Principal, Voc. H. S. School, Rairangpur.
12. Miss P. Mohapatra, Instructress, H.E.T.C., Laxmi Sagar.
13. Dr. D. C. Mishra, Dey. Director, T.E. & S.C.E.R.T.
14. Dr. B. K. Shee Associate Prof. R. H. T. C, Jagatsinghpur,

*Editing* : Dr. Bijayalaxmi Das, Reader in H. Sc.

*Published by* : Basanti Behera, Snr. Lect.
Orissa State Bureau of Test Book Preparation
& Production, Bhubaneswar.

First Publication—1994 / 1000Copies
Publication No—VOC—13


*Printed at* M/s. **P. I, Industries**
Industrial Estate, Mancheswar,
Bhubaneswar,

Price—Rs. 8-80 (Eight Rupees Eighty paice)

# ସାମାନ୍ୟ କଥନ

ଶିକ୍ଷା ବିଭାଗ ଦ୍ୱାରା ବୈକଳ୍ପିକ ବା ଧନ୍ଦାମୂଳକ ଶିକ୍ଷା ପ୍ରବର୍ତ୍ତନ ଏକ ଯୁଗାନ୍ତକାରୀ ପରିକଳ୍ପନା । ସାଧାରଣ ଶିକ୍ଷା ଲାଭ କରି ଚାକିରି ଆଶାରେ ବହୁ ଯୁବକ ଯୁବତୀ ବେକାରୀ ତାଡ଼ନାରେ ଜୀବନକୁ ଅତିଷ୍ଠ ମଣୁଛନ୍ତି । ଜାତୀୟ ଶିକ୍ଷାନୀତି ସମୀକ୍ଷା କଲାବେଳେ, ସମାଜ ଓ ଦେଶର ସମସ୍ୟାକୁ ଆଖି ଆଗରେ ରଖି ଶିକ୍ଷାବିତ୍ ତଥା ଜନନାୟକମାନେ ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନପାଇଁ ଆଗ୍ରହୀ ହେଲେ ଓ ଏହାର ଫଳ ଯେ ସୁଦୂରପ୍ରସାରୀ ତାହା ଏବେ ସର୍ବାଦୌ ଉପଲବ୍ଧି ହୋଇପାରୁଛି ।

ଏହି ଧନ୍ଦାମୂଳକ ଶିକ୍ଷା କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାପାଇଁ ଶିକ୍ଷା ବିଭାଗ 'ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା' ଉପରେ ଧନ୍ଦାମୂଳକ ସମସ୍ତ ପାଠ୍ୟ ପୁସ୍ତକ ଓଡ଼ିଆ ଭାଷାରେ ମୁଦ୍ରଣ, ପ୍ରକାଶନ ଓ ସୁଲଭ ମୂଲ୍ୟରେ ବିକ୍ରୟ କରିବାର ଦାୟିତ୍ୱ ନ୍ୟସ୍ତ କରିଛନ୍ତି । ତଦନୁଯାୟୀ ୨୯ ଖଣ୍ଡ ପାଠ୍ୟ ପୁସ୍ତକ ମୁଦ୍ରଣ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ଆଲୋଚ୍ୟ 'ଶିଶୁର ଯତ୍ନ ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା' (ମୌଳିକ ପାଠ୍ୟକ୍ରମ) ପୁସ୍ତକଟି ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ, ରାଜ୍ୟ ଶିକ୍ଷା ଏବଂ ଗବେଷଣା ପ୍ରଶିକ୍ଷଣ ଦ୍ୱାରା ନିଯୁକ୍ତ ଲେଖକ ଓ ସମ୍ପାଦକ ମଣ୍ଡଳୀ ଦ୍ୱାରା ପ୍ରସ୍ତୁତ କରାଯାଇଛି ।

'ଶିଶୁର ଯତ୍ନ ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା' (ମୌଳିକ ପାଠ୍ୟକ୍ରମ) ଯୁକ୍ତ ଦୁଇ ଧନ୍ଦାମୂଳକ ଶିକ୍ଷା ସମାପ୍ତ କରି ଶିକ୍ଷାର୍ଥୀମାନେ ସହଜରେ ଶିଶୁର ଯତ୍ନ ଏବଂ ସେମାନଙ୍କର ଶିକ୍ଷାର ଉନ୍ନତି ସାଧନ କରିପାରିବେ । ଶିଶୁ ହେଉଛି ସମାଜର ଭବିଷ୍ୟତ ଏଣୁ ସେମାନଙ୍କର ଉତ୍ତମ ଯତ୍ନ ଓ ଶିକ୍ଷା ଦେବା ହେଉଛି ପ୍ରତ୍ୟେକ ପିତା-ମାତାଙ୍କର କର୍ତ୍ତବ୍ୟ । ଏଣୁ ଏହି ପୁସ୍ତକଟିକୁ ଅଧ୍ୟୟନ କରି ଏହି କାର୍ଯ୍ୟରେ ନିୟୋଜିତ ହୋଇ ଉପକୃତ ହୋଇ ପାରିଲେ ଆମ ଶ୍ରମ ସାର୍ଥକ ହେବ ।

ସଂସ୍ଥା ତରଫରୁ ମୁଁ ଏହି ଅବସରରେ ଲେଖକ, ସମୀକ୍ଷକ, ଭାଷା ବିଶେଷଜ୍ଞ ତଥା ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ଉକ୍ତ ପୁସ୍ତକଟି ଶିକ୍ଷାର୍ଥୀ ତଥା ଅଧ୍ୟାପକ ଅଧ୍ୟାପିକା ମହଲରେ ବିଶେଷ ଆଦୃତ ହେବ ବୋଲି ଆଶାକରେ ।

ମହମ୍ମଦ କମ୍‌ରୁଦ୍ଦିନ ଖାଁ
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର
ତା ୨୨।୨।୯୪

# ପ୍ରସ୍ତାବନା

୧୯୮୬ ଜାତୀୟ ଶିକ୍ଷାନୀତିରେ ଶିକ୍ଷା କ୍ଷେତ୍ରରେ ବୈକଳ୍ପିକ ଶିକ୍ଷା ବା ଧନ୍ଦାମୂଳକ ଶିକ୍ଷାର ପ୍ରବର୍ତ୍ତନ ପାଇଁ ପରିକଳ୍ପନା କରାଯାଇଛି । ଏହି ପରିକଳ୍ପନା ଅନୁଯାୟୀ ରାଜ୍ୟରେ ଯୁକ୍ତ ଦୁଇ କ୍ଷେତ୍ରରେ ବହୁ ଧନ୍ଦାମୂଳକ ଶିକ୍ଷା ପ୍ରଚଳନ କରାଯାଇ-ଅଛି । ସେଥିମଧ୍ୟରୁ 'ଦିବା ଶିଶୁ ପାଳନ କେନ୍ଦ୍ର' ଓ 'ପ୍ରାକ୍ ବିଦ୍ୟାଳୟ ପରିଚାଳନା'— ଅନ୍ୟତମ । ମାତୃଭାଷା ଜରିଆରେ ଧନ୍ଦାମୂଳକ ଶିକ୍ଷାଦାନ ବ୍ୟବସ୍ଥା ଜାତୀୟ ସ୍ତରରେ ତଥା ରାଜ୍ୟସ୍ତରରେ ଗୃହୀତ ହୋଇ ଅଛି । ଏହାଦ୍ୱାରା ଛାତ୍ରଛାତ୍ରୀମାନଙ୍କର ଉକ୍ତ ବିଷୟ ଗୁଡ଼ିକ ସମ୍ବନ୍ଧରେ ଜ୍ଞାନ ସହଜ ଲବ୍ଧ ହେବ । ଅଭିଜ୍ଞ ଅଧ୍ୟାପକ, ବୈଜ୍ଞାନିକ ଓ ବିଶେଷଜ୍ଞମାନଙ୍କୁ ନେଇ ଏହି ପୁସ୍ତକ ପ୍ରସ୍ତୁତ କରାଯାଇଅଛି । ପାଠ ପେଟ ପୋଷିବାରେ ସାହାଯ୍ୟ କରିପାରିଲେ ବେକାରି ରହିବ ନାହିଁ । ଧନ୍ଦାମୂଳକ ଶିକ୍ଷାର ଏହା ଉଦ୍ଦେଶ୍ୟ ଅଟେ । ପାଠ ଖାଲି ବାବୁଗିରି ଶିଖାଇଛି ବୋଲି ଅପବାଦ ମିଳୁଛି । ପାଠ ଜୀବିକା ଅର୍ଜନରେ ସହାୟକ ହେଉ । ପୋଥି ପାଠ ଅର୍ଥକାରୀ ହେଉ ।

ଯାହା ଶ୍ରେଣୀ ଗୃହରେ ପଢ଼ାଗଲା ତାକୁ କାମରେ ଲଗାଇ ଜୀବିକା ଅର୍ଜନ କଲେ ବାଡ଼ି ବାଇଗଣ ଓ ପୋଥି ବାଇଗଣ ମଧ୍ୟରେ ତଫାତ୍ ରହିବ ନାହିଁ । 'ଦିବା ଶିଶୁ ପାଳନ କେନ୍ଦ୍ର ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା'—ଧନ୍ଦାରେ ଆମ ପିଲାମାନେ ଧୁରନ୍ଧର ହୋଇ ସହଜରେ ଅର୍ଜନପଟୁ ହୁଅନ୍ତୁ । ପିଲଙ୍କ ମନୋବଳ ବୃଦ୍ଧି ପାଉ । ପାଠପଢ଼ି ମଧ୍ୟ ସେମାନଙ୍କର ଅର୍ଥ ଉପାର୍ଜନ ପାଇଁ କ୍ଷମତା ରହୁନାହିଁ ବୋଲି ସେମାନେ ଆଉ କ୍ଷୋଭ ନ କରନ୍ତୁ । ଚାକିରି ପଛରେ ନ ଗୋଡେଇ ଘରେ ବସି ଉପାର୍ଜନ କରନ୍ତୁ । ହାତ ତାଙ୍କର ଟାଣ ହେଉ । ସେହି ହାତରେ ଭାତ ମିଳୁ ।

ରଜତ କୁମାର କର

ନିର୍ଦ୍ଦେଶକ

ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା,

ଗବେଷଣା ଓ ପ୍ରଶିକ୍ଷଣ ପରିଷଦ

ଓଡ଼ିଶା, ଭୁବନେଶ୍ୱର

ଭୁବନେଶ୍ୱର

ତା ୧୦ । ୮ । ୯୦

# ମୁଖବନ୍ଧ

ପାଠ ପଢ଼ା ସଙ୍ଗେ ସଙ୍ଗେ ରୋଜଗାର ପନ୍ଥା ସୃଷ୍ଟି କରିବା ହେଲା ଆଧୁନିକ ଶିକ୍ଷାର ଲକ୍ଷ୍ୟ । ଶିକ୍ଷା ଅନୁଷ୍ଠାନରେ ବୃତ୍ତିମୂଳକ ଶିକ୍ଷା ପାଇଥିଲେ ଶିକ୍ଷାର୍ଥୀମାନେ ନିଜେ ନିଜେ କିଛି ନା କିଛି ବୃତ୍ତି ଅବଲମ୍ବନ କରି ସେମାନଙ୍କର ଜୀବିକା ନିର୍ବାହ କରିପାରିବେ ।

ଅନେକ ପ୍ରକାର ବୃତ୍ତିମୂଳକ ଶିକ୍ଷା ମଧ୍ୟରେ 'ଦିବା ଶିଶୁ ପାଳନ କେନ୍ଦ୍ର ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା' ଅନ୍ୟତମ । ପ୍ରାକ୍ ବିଦ୍ୟାଳୟ ଶିକ୍ଷାନୁଷ୍ଠାନ ଦେଶର ସାର୍ବଜନୀନ ପ୍ରାଥମିକ ଶିକ୍ଷାର ପ୍ରସାରରେ ପ୍ରଧାନ ସହାୟକ ହୋଇ ପାରିବ । ପୁନଶ୍ଚ ଏହି ବୃତ୍ତିମୂଳକ ଶିକ୍ଷା ଯୁବକ ଓ ଯୁବତୀମାନଙ୍କୁ ଆତ୍ମନିଯୁକ୍ତି ଓ କର୍ମ ନିଯୁକ୍ତି କ୍ଷେତ୍ରରେ ସୁବିଧା ସୁଯୋଗ ଯୋଗାଇପାରିବ ।

ଆଦର୍ଶ ପ୍ରାକ୍ ବିଦ୍ୟାଳୟ, ବାଲୱାଡ଼ି, ଅଙ୍ଗନୱାଡ଼ି, କ୍ରେଚ୍ ପ୍ରଭୃତି ସ୍ଥାପନ କରି ଶିଶୁମାନଙ୍କର ସର୍ବାଙ୍ଗୀନ ଉନ୍ନତିମୂଳକ ଶିକ୍ଷାଦାନ ନିମନ୍ତେ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକର ଅଭାବକୁ ମେଣ୍ଟାଇବା ପାଇଁ କେତେକ ଅଭିଜ୍ଞ ବ୍ୟକ୍ତିଙ୍କୁ ନେଇ ଏକ ଲେଖକ ମଣ୍ଡଳୀ ଗଠନ କରାଯାଇ ଓଡ଼ିଆ ଭାଷାରେ 'ଶିଶୁର ଯତ୍ନ ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା' ପୁସ୍ତକଟି ପ୍ରସ୍ତୁତ କରାଯାଇଛି ।

ଉକ୍ତ ପୁସ୍ତକରେ ଶିକ୍ଷାର୍ଥୀମାନଙ୍କର ହୃଦୟଙ୍ଗମ ହେଲା ଭଳି ସରଳ ଓଡ଼ିଆ ଭାଷା ଓ କେତେକ ସ୍ଥଳରେ ଇଂରାଜୀ ଶବ୍ଦ ଓ ପ୍ରଚଳିତ ଶବ୍ଦ ମଧ୍ୟ ବ୍ୟବହାର କରାଯାଇଅଛି । 'ଦିବା ଶିଶୁ ପାଳନ କେନ୍ଦ୍ର ଓ ପ୍ରାକ୍ ବିଦ୍ୟାଳୟ ପରିଚାଳନା' ସମ୍ବନ୍ଧୀୟ ବିଭିନ୍ନ ବିଷୟରେ ଶିକ୍ଷାର୍ଥୀଙ୍କ ବୁଝିଲା ଭଳି ତଥ୍ୟ ଏହି ପୁସ୍ତକରେ ଆଲୋଚନା କରାଯାଇଅଛି । ଜଟିଳ ଶବ୍ଦଗୁଡ଼ିକୁ ସରଳ ଓଡ଼ିଆ ଭାଷାରେ ବୁଝାଇବା ପାଇଁ ଚେଷ୍ଟା କରାଯାଇଅଛି ।

ଶିକ୍ଷାର୍ଥୀମାନଙ୍କର ଚାହିଦାକୁ ଆଖି ଆଗରେ ରଖି ପ୍ରଥମ ସଂସ୍କରଣ ଶୀଘ୍ର ପ୍ରକାଶ କରିବାକୁ ଉଦ୍ୟମ କରାଯାଇଅଛି । ପରବର୍ତ୍ତୀ ସଂସ୍କରଣମାନ ଆହୁରି ପରିମାର୍ଜିତ ହେବାର ଆଶା ।

ବର୍ତ୍ତମାନ ପ୍ରକାଶିତ 'ଶିଶୁର ଯତ୍ନ ଓ ପ୍ରାକ୍ ବିଦ୍ୟାଳୟ ପରିକଳ୍ପନା' ପୁସ୍ତକଟିର ପ୍ରସ୍ତୁତ ପାଇଁ ପ୍ରଫେସର ଶତ୍ରୁଘ୍ନ ନାଥ ଓ ତାଙ୍କର ସହଯୋଗୀ ଅଧ୍ୟାପକମାନଙ୍କର ଉଦ୍ୟମ ପ୍ରଶଂସନୀୟ, ଏହି ପରିଷଦର ଧନ୍ଦାମୂଳକ ଶିକ୍ଷା ଦାୟିତ୍ୱରେ ଥିବା ପୂର୍ବତନ ପ୍ରଫେସର ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ, ରିଡ଼ର ମଧୁସୂଦନ ଦାସ, ରିଡ଼ର ଡକ୍ଟର ବିଜୟଲକ୍ଷ୍ମୀ ଦାସ ଓ ସହାୟକ ଶ୍ରୀ ଘନଶ୍ୟାମ ନିଆଲ ଏବଂ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦର କର୍ମକର୍ତ୍ତାଗଣ ଏହି ପୁସ୍ତକର ପ୍ରସ୍ତୁତ ପାଇଁ ସମନ୍ୱୟ ସମ୍ପାଦନ ତଥା ପ୍ରେରଣା ଦେଇଥିବାରୁ ସେମାନଙ୍କୁ ଧନ୍ୟବାଦ ଜ୍ଞାପନ କରୁଅଛି । ପରିଶେଷରେ 'ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା' ଏହି ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ମୁଁ ପରିଷଦ ତରଫରୁ ସେହି ସଂସ୍ଥାର ନିର୍ଦ୍ଦେଶକ ତଥା ତାଙ୍କର ସହଯୋଗୀମାନଙ୍କୁ ଧନ୍ୟବାଦ ଜ୍ଞାପନ କରୁଅଛି ।

ଡକ୍ଟର ପ୍ରଫୁଲ୍ଲଚନ୍ଦ୍ର ମହାପାତ୍ର
ପ୍ରଫେସର ଧନ୍ଦାମୂଳକ ଶିକ୍ଷା
ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ
ଓ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ
ଓଡ଼ିଶା, ଭୁବନେଶ୍ୱର

# ସୂଚିପତ୍ର





# ପ୍ରଥମ ଅଧ୍ୟାୟ

## ପ୍ରାକ ବିଦ୍ୟାଳୟ ଶିକ୍ଷାର ଆବଶ୍ୟକତା, ଗୁରୁତ୍ୱ ଏବଂ ପରିସର

ଶିକ୍ଷା ଏକ ଆଜୀବନ ପ୍ରକ୍ରିୟା । ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଆମେ କିଛି ନା କିଛି ଶିଖିଥାଉ । ହେଲେ ଆନୁଷ୍ଠାନିକ ଶିକ୍ଷାର ସମୟ ସୀମାବଦ୍ଧ । ଆନୁଷ୍ଠାନିକ ଶିକ୍ଷା ଆରମ୍ଭ ହୁଏ ପ୍ରାଥମିକ ବିଦ୍ୟାଳୟରୁ ଏବଂ ଏହାର ପରିସମାପ୍ତି ଘଟେ ବିଶ୍ୱବିଦ୍ୟାଳୟ ଶିକ୍ଷାରେ । ଏହି ଆନୁଷ୍ଠାନିକ ଶିକ୍ଷାରେ ପ୍ରବେଶ ପାଇଁ ମଧ୍ୟ ଏକ ନିର୍ଦ୍ଦିଷ୍ଟ ବୟସ ସୀମା ଅଛି । ଏହି ବୟସ ସୀମା ବିଭିନ୍ନ ଦେଶପାଇଁ ଭିନ୍ନ ଭିନ୍ନ ହୋଇପାରେ । ଆମ ରାଜ୍ୟରେ ଅଧୁନା ପ୍ରାଥମିକ ସ୍ତରରେ ପ୍ରବେଶ ବୟସ ୫+ ଅର୍ଥାତ୍ ପାଞ୍ଚ ବର୍ଷ ବୟସ ପୂରିଗଲେ ପିଲାଟିଏ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଏ । ଅଧିକାଂଶ ପିତା ମାତା ପିଲର ନାମ ପ୍ରାଥମିକ ବିଦ୍ୟାଳୟରେ ଲେଖାଇ ଦେବା ପରେ ଭାବି ନିଅନ୍ତି ଯେ, ଏଥର ପିଲର ପାଠ ପଢ଼ା ବିନା ବାଧାରେ ଚାଲିବ । ପିଲାଟି ପ୍ରାଥମିକ ବିଦ୍ୟାଳୟରେ ଠିକ୍ ଭାବରେ ବିଦ୍ୟା ଶିକ୍ଷା କରିବା ପାଇଁ ପୂର୍ବ ପ୍ରସ୍ତୁତି ଦରକାର କରିଥାଏ । ଏହା ଅନେକ ପିତା ମାତାଙ୍କର ଧାରଣାକୁ ମଧ୍ୟ ଆସେ ନାହିଁ । ବିଦ୍ୟାଳୟକୁ ଆସିବା ପୂର୍ବରୁ ଶିଶୁ ପରିବାର ଭିତରେ ତାର ସମୟକୁ ହସି, ଖେଳି, ଗପ ଶୁଣି, ଗୀତ ଗାଇ ଏକ ମୁକ୍ତ ଏବଂ ଆନନ୍ଦଦାୟକ ବାତାବରଣ ଭିତରେ କଟାଉଥିଲ ଏବଂ ପାଞ୍ଚ ବର୍ଷ ପୂରିଗଲା ପରେ ଆମେ ତାକୁ ଏକ ନିୟନ୍ତ୍ରିତ ବାତାବରଣ ବା ପରିବେଶ ଭିତରକୁ ଛାଡ଼ି ଦେଉଛୁ । ଏକଥା ଅନେକ ପିତା ମାତା ହୃଦୟଙ୍ଗମ କରିପାରନ୍ତି ନାହିଁ । ଏତଦ୍ ବ୍ୟତୀତ ଆମ ରାଜ୍ୟର ପ୍ରାଥମିକ ବିଦ୍ୟାଳୟଗୁଡ଼ିକ ବର୍ତ୍ତମାନ ଯେପରି ଅବସ୍ଥାରେ ଅଛି, ଉପଯୁକ୍ତ ସଂଖ୍ୟକ ଶିକ୍ଷକ, ଉପଯୁକ୍ତ ଶିକ୍ଷା ଉପକରଣ ଅଭାବରେ ଯେପରି ପରିଚାଳିତ ହେଉଛି, ତାହା ଗ୍ରେଟ ଗ୍ରେଟ ପିଲାଙ୍କ ମନ ଆକର୍ଷଣ କରିବା ପାଇଁ ଅନୁକୂଳ ନୁହେଁ ।

ଏଥିପାଇଁ ଆଜି ପ୍ରାଥମିକ ବିଦ୍ୟାଳୟରୁ ପାଠ ଛାଡ଼ି ବହୁତ ପିଲା ଅସମୟରେ ଚାଲି ଯାଉଛନ୍ତି । ପାଠ ପଢ଼ାରେ ମନ ନ ଲାଗିବା ଫଳରେ ବହୁତ ପିଲା ବିଭିନ୍ନ ଶ୍ରେଣୀରେ ଅକୃତକାର୍ଯ୍ୟ ହୋଇ ବର୍ଷକର ପଢ଼ା ପାଠ ପାଇଁ ଏକାଧିକ ବର୍ଷ

ନେଉଛନ୍ତି । ଏହା ଦ୍ୱାରା ଅଯଥା ପିଲାର ସମୟ ଅପବ୍ୟୟ ହେଉଛି । ଏପ୍ରକାର ଅପଚୟ ଓ ଅନଗ୍ରସରତା ପାଇଁ ଅନାକର୍ଷଣୀୟ ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ ଅନେକାଂଶରେ ଦାୟୀ । ଏଥିରେ ସନ୍ଦେହ ନାହିଁ ।

ଏହିସବୁ ଦୃଷ୍ଟିରୁ ପ୍ରାଥମିକ ବିଦ୍ୟାଳୟ ପ୍ରବେଶ ପୂର୍ବରୁ ଶିଶୁର ଉପଯୁକ୍ତ ପ୍ରସ୍ତୁତି ପାଇଁ କିଛିପ୍ରାକ୍ ଶିକ୍ଷା କାର୍ଯ୍ୟକ୍ରମର ବ୍ୟବସ୍ଥା କରିବା ଆବଶ୍ୟକ । "ପ୍ରାଥମିକ ବିଦ୍ୟାଳୟ ପ୍ରବେଶ ପୂର୍ବରୁ ଶିଶୁପାଇଁ ଯେଉଁ ଶିକ୍ଷାର ବ୍ୟବସ୍ଥା କରାଯାଇଥାଏ ତାହାକୁ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା କହନ୍ତି'।" ଇଂରାଜୀରେ ଏହାକୁ Pre-School Education କୁହାଯାଏ । ଜାତୀୟ ଶିକ୍ଷା ବ୍ୟବସ୍ଥାରେ ଏହାକୁ "Early Child hood care and Education" ବୋଲି ମଧ୍ୟ କୁହାଗଲଣି ।

ମନସ୍ତତ୍ତ୍ୱବିତ୍ମାନଙ୍କ ମତରେ ଶିଶୁର ପ୍ରାୟ ଅଧାଅଧି ମାନସିକ ପ୍ରସ୍ତୁତି ଏବଂ ବୃଦ୍ଧିର ବିକାଶ ଏହି ପ୍ରାକ୍ ବିଦ୍ୟାଳୟ ଅବସ୍ଥାରେ ହୋଇଥାଏ । ଏଣୁ ଏ ଅବସ୍ଥାରେ ଯଦି ଆମେ ତାର ଉପଯୁକ୍ତ ବୃଦ୍ଧି ଓ ବିକାଶ ପ୍ରତି ଦୃଷ୍ଟି ନଦେବା ତେବେ ପରବର୍ତ୍ତୀ ଅବସ୍ଥାରେ ତାର ପୂର୍ଣ୍ଣ ବିକାଶ ବାଧାପ୍ରାପ୍ତ ହେବ ।

## ପ୍ରାକ୍ ବିଦ୍ୟାଳୟ କାର୍ଯ୍ୟକ୍ରମର ଆବଶ୍ୟକତା ଏବଂ ଗୁରୁତ୍ୱ

ଜନ୍ମଠାରୁ ବିଦ୍ୟାଳୟ ପ୍ରବେଶ ପର୍ଯ୍ୟନ୍ତ ସମୟ ମଧ୍ୟରେ ଶିଶୁର ଉପଯୁକ୍ତ ବୃଦ୍ଧି ଓ ବିକାଶ ପ୍ରତି ଦୃଷ୍ଟି ଦେବା ପ୍ରାକ୍ ବିଦ୍ୟାଳୟ କାର୍ଯ୍ୟକ୍ରମର ମୂଳ ଲକ୍ଷ୍ୟ । କେହି କେହି ଏହାକୁ ଶିଶୁର ଗର୍ଭସଞ୍ଚାର ଦିନଠାରୁ ବିବେଚନାକୁ ଆଣିଥାନ୍ତି । କିନ୍ତୁ ଜନ୍ମ ଗ୍ରହଣର ପୂର୍ବ ଅବସ୍ଥାର ଯତ୍ନ ପ୍ରତ୍ୟକ୍ଷ ନହୋଇ ମା'ଙ୍କ ମାଧ୍ୟମରେ ପରୋକ୍ଷରେ ହୋଇଥାଏ । ନିର୍ଦ୍ଦିଷ୍ଟ ଭାବରେ କହିବାକୁ ଗଲେ ମୁଖ୍ୟତଃ ତିନିଗୋଟି ଉଦ୍ଦେଶ୍ୟ ନେଇ ପ୍ରାକ୍ ବିଦ୍ୟାଳୟ ଶିକ୍ଷାର ଆବଶ୍ୟକତା ଅପରିହାର୍ଯ୍ୟ ।

୧ । ଜନ୍ମଠାରୁ ବିଦ୍ୟାଳୟ ପ୍ରବେଶ ପର୍ଯ୍ୟନ୍ତ ସମୟ ମଧ୍ୟରେ ଶିଶୁର ଉପଯୁକ୍ତ ବୃଦ୍ଧି ଓ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ।

୨ । ଅନୁଷ୍ଠାନିକ ଶିକ୍ଷାବ୍ୟବସ୍ଥା ସହ ନିଜକୁ ଖାପ ଖୁଆଇ ନେବାପାଇଁ ଶିଶୁର ପ୍ରସ୍ତୁତିରେ ସହାୟକ ହେବା ।

୩ । ଆଦିବାସୀ ଶିଶୁମାନଙ୍କ ପରି ଯେଉଁ ଶିଶୁମାନେ ଦ୍ୱିଭାଷୀ (ମାତୃଭାଷା ବ୍ୟତୀତ ଅନ୍ୟ ଏକ ଭାଷାରେ ଆନୁଷ୍ଠାନିକ ଶିକ୍ଷାଲାଭ କରନ୍ତି । ) ସେମାନଙ୍କୁ ନିଜ ଭାଷାରେ ଉପଯୁକ୍ତ ଜ୍ଞାନ ଆହରଣ ପାଇଁ ସୁଯୋଗ ଦେବା ।

## ପ୍ରାକ୍ ବିଦ୍ୟାଳୟ କାଳରେ ଶିଶୁର ବୃଦ୍ଧି ଓ ବିକାଶକୁ ତ୍ୱରାନ୍ୱିତ କରିବା

ଆଗରୁ କୁହାଯାଇଛି ଯେ ଶିଶୁର ବୃଦ୍ଧି ଓ ବିକାଶ ଜନ୍ମଠାରୁ ଆରମ୍ଭ ହୁଏ । ଅନେକଙ୍କ ମତରେ ଏହା ମା' ପେଟରୁ ମଧ୍ୟ ଆରମ୍ଭ ହୋଇଥାଏ ।

**ଗର୍ଭାବସ୍ଥା**—ଶିଶୁର ଶରୀର ଏକ ସୂକ୍ଷ୍ମ ଅବସ୍ଥାରୁ ବୃଦ୍ଧି ଲାଭକରି ପରିଶେଷରେ ଜନ୍ମଲାଭ କରେ । ଏହି ଅବସ୍ଥାରେ ଶିଶୁର ଉପଯୁକ୍ତ ଶାରୀରିକ ବୃଦ୍ଧି ପ୍ରତି ଦୃଷ୍ଟି ନଦେଲେ ଶିଶୁ ବିକଳାଙ୍ଗ ବା ଦୁର୍ବଳ ହୋଇପାରେ । ଜନ୍ମ ପୂର୍ବରୁ ମଧ୍ୟ ଶିଶୁ ପ୍ରତି କେତେକ ରୋଗ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯାଇଥାଏ । କେତେକ ମନୋବିଜ୍ଞାନୀଙ୍କ ମତରେ ଗର୍ଭାବସ୍ଥାରେ ମା'ଙ୍କର ଚାଲିଚଳନ ଓ ଆଚରଣ ବ୍ୟବହାର ମଧ୍ୟ ଶିଶୁର ମାନସିକ ବିକାଶ ଉପରେ ପ୍ରଭାବ ପକାଇଥାଏ । ଏଥିପାଇଁ ମା'ଙ୍କର ଗର୍ଭସଞ୍ଚାର ହେଲେ ତାଙ୍କର ଚାଲିଚଳନ, ଆଚରଣ ବ୍ୟବହାର, ଆହାର ଓ ପାନୀୟ ତଥା ଅନେକ ଦୈନନ୍ଦିନ କାର୍ଯ୍ୟକୁ ନିୟନ୍ତ୍ରିତ କରାଯାଇଥାଏ । ମା'ଙ୍କ କାର୍ଯ୍ୟକୁ ସୁନିୟନ୍ତ୍ରିତ କରି ଶିଶୁର ଉପଯୁକ୍ତ ଶାରୀରିକ ଓ ମାନସିକ ବିକାଶ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବାର ଆବଶ୍ୟକତା ରହିଛି । ଆମ ଦେଶର ଏବଂ ପାଶ୍ଚାତ୍ୟ ଦେଶର ଅନେକ ମନୋବିଜ୍ଞାନୀ ଏହାର ସତ୍ୟତା ଉପରେ ଏବେ ଗୁରୁତ୍ୱ ଦେଲେଣି ।

**ଜନ୍ମ ଲାଭର ପର ଅବସ୍ଥା**—ଜନ୍ମ ହେବାପରେ ଶିଶୁର ପ୍ରତ୍ୟକ୍ଷ ଦାୟିତ୍ୱ ବାପା ମା'ଙ୍କ ଉପରେ ପଡ଼େ । ଏହି ସମୟଟି ପ୍ରକୃତରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଜନ୍ମ ପ୍ରାକୃତିକ ଏବଂ ସହଜ ନହେଲେ ମା' ଏବଂ ଶିଶୁ ଦୁହିଙ୍କ ଜୀବନ ଉପରେ ବିପଦ ଦେଖାଯାଏ । ଜନ୍ମ ପୂର୍ବରୁ ଶିଶୁ ଏକ ନିୟନ୍ତ୍ରିତ ପରିବେଶ (ମାତୃଗର୍ଭ)ରେ ଥାଏ । ଏଠାରେ ବାୟୁର ଚାପ, ତାପ ଏବଂ ପରିବେଶରେ ଅନ୍ୟାନ୍ୟ ଅବସ୍ଥା ଖୁବ୍ ନିୟନ୍ତ୍ରିତ । କିନ୍ତୁ ଜନ୍ମ ହେବା ପରେ ପ୍ରଥମେ ସେ ଏକ ଭିନ୍ନ ଓ ଅନିଶ୍ଚିତ ପରିବେଶର ସମ୍ମୁଖୀନ ହୁଏ । ଏହି ପରିବେଶର ଚାପ, ତାପ ଓ ଜଳବାୟୁ କ୍ଷଣ କ୍ଷଣକେ ବଦଳୁଥାଏ । ଜନ୍ମ ହେବା ପରେ ବାହାରର ବିଭିନ୍ନ ରୋଗ ଜୀବାଣୁ ମଧ୍ୟ ଶିଶୁର ଶରୀରରେ ପ୍ରବେଶ କରିବାକୁ ଚେଷ୍ଟା କରନ୍ତି । ଏଣୁ ଏହି ସମୟଟି ଶିଶୁପାଇଁ ଅତ୍ୟନ୍ତ ଜଟିଳ । ଅନେକ

ଶିଶୁ ଏ ପ୍ରକାର ପ୍ରତିକୂଳ ପରିବେଶ ସହ ଖାପ ଖୁଆଇ ନପାରି ଅସମୟରେ ମୃତ୍ୟୁ ମୁଖରେ ପଡ଼ନ୍ତି ।

ଯେଉଁ ଶିଶୁ ଏହି ସମସ୍ୟାଗୁଡ଼ିକର ସମାଧାନ ବାଟରେ ଯେତେ ପଛୁଇଯାଏ ସେହି ଅନୁସାରେ ତାର ବୃଦ୍ଧି ଓ ବିକାଶ ବାଧାପ୍ରାପ୍ତ ହୁଏ । ଶିଶୁର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ବାପା, ମା, ଏବଂ ଅନ୍ୟାନ୍ୟ ଗୁରୁଜନ ଅନୁକୂଳ ପରିବେଶ ସୃଷ୍ଟି କରିବା ଉଚିତ । ଏହା ହେଉଛି ପ୍ରାକ୍ ବିଦ୍ୟାଳୟ କାର୍ଯ୍ୟକ୍ରମର ଏକ ମୁଖ୍ୟ ଉଦ୍ଦେଶ୍ୟ ।

ଜନ୍ମ ହେବାପରେ ଶିଶୁ ନୂଆକରି ଏ ଦୁନିଆକୁ ଦେଖେ । ମା' ବାପା, ଭାଇ ଭଉଣୀ ଓ ପରିବାରର ଅନ୍ୟାନ୍ୟ ବ୍ୟକ୍ତିବିଶେଷଙ୍କ ସହ ପରିଚିତ ହୁଏ । ପ୍ରଥମ କେତେ ମାସ ପାଇଁ ତାର ପରିବେଶ ମୁଖ୍ୟତଃ ପରିବାର ଭିତରେ ସୀମିତ ରହେ ପରେ ସେ ବାହାର ଦୁନିଆର ଗଛଲତା, ଫୁଲଫଳ, ପଶୁପକ୍ଷୀ ଏବଂ ଅନ୍ୟ ବ୍ୟକ୍ତି-ବିଶେଷଙ୍କ ସହ ପରିଚିତ ହୁଏ । ଏହାଦ୍ୱାରା ତାର ଜ୍ଞାନର ବିକାଶ, ସାମାଜିକ ବିକାଶ ଏବଂ ଆବେଗିକ ବିକାଶ ହେବାକୁ ଆରମ୍ଭ କରେ ।

ଜନ୍ମ ଅବସ୍ଥାରେ ଶିଶୁର ସ୍ଥୂଳ ଓ ସୂକ୍ଷ୍ମ ମାଂସପେଶୀଗୁଡ଼ିକ ଖୁବ୍ ନମନୀୟ ଅବସ୍ଥାରେ ଥାଏ । ସେ ହାତ ଗୋଡ଼ ହଲାଇ ଖେଳିଲେ, ଆସ୍ତେ ଆସ୍ତେ ପାଦ ପକାଇ ଚାଲିବାକୁ ଚେଷ୍ଟାକଲେ, ଏପରିକି କାନ୍ଦିଲେ ମଧ୍ୟ ତାର ଏହି ମାଂସପେଶୀଗୁଡ଼ିକର ବୃଦ୍ଧି ଓ ବିକାଶ ଆରମ୍ଭ ହୁଏ ।

ଯେଉଁ ଶିଶୁ ଏହି ସବୁ କାର୍ଯ୍ୟ କରିବାପାଇଁ ଯେତେ ବେଶି ସୁବିଧା ପାଏ ତାର ମାଂସପେଶୀଗୁଡ଼ିକ ସେତେ ଦୃଢ଼ ହୁଏ । ଫଳରେ ତାର ସେତେ ଅଧିକ ଶାରୀରିକ ସାମର୍ଥ୍ୟ ଆସେ । ମାତୃଭାଷାରେ ନିଜର ଭାବକୁ ବ୍ୟକ୍ତ କରିବା ପାଇଁ ଶିଶୁ ଏହି ଅବସ୍ଥାରୁ ଚେଷ୍ଟାକରେ । ଯେଉଁ ଶିଶୁ ଯେତେ କଥା ଶୁଣେ ଏବଂ ନିଜର ଭାବ ଭାଷାରେ ବ୍ୟକ୍ତ କରିବାକୁ ଯେତେ ସୁବିଧା ପାଏ, ଭାଷା ଜ୍ଞାନ ତାର ସେତେ ବିକଶିତ ହୁଏ ।

ଶିଶୁ ଜନ୍ମ ହେବା ପରେ ପରିବାରର ଏକ ଅଂଶ ରୂପେ ବିବେଚିତ ହୁଏ । ତେଣୁ ପରିବାର ଓ ସମାଜରେ ସଭ୍ୟଭାବେ ଚଳି ଶିଖିବାପାଇଁ ଶିଶୁ ଚେଷ୍ଟାକରେ । ଏହାଦ୍ୱାରା ତାର ଉପଯୁକ୍ତ ସାମାଜିକ ଓ ଆବେଗିକ ବିକାଶ ହୁଏ । ଗୁରୁଜନମାନେ

ଏଥିପାଇଁ ମଧ୍ୟ ଉପଯୁକ୍ତ ପରିବେଶର ସୃଷ୍ଟି କରିବା ଦରକାର । ତାହା ନ ହେଲେ ଶିଶୁ ଅସାମାଜିକ ହୋଇ ଯିବାର ଆଶଙ୍କା ଦେଖାଯିବ ।

ଏହିପରି ଭାବରେ ପ୍ରାକ୍ ବିଦ୍ୟାଳୟରେ ଶିଶୁର ଶାରୀରିକ ବିକାଶ, ସ୍ୱାସ୍ଥ୍ୟର ବିକାଶ, ସାମାଜିକ ଓ ଆବେଗିକ ବିକାଶ ଓ ଜ୍ଞାନର ବିକାଶ ଆଦି ସଂଘଟିତ ହୁଏ । ଏଥିପାଇଁ ଉପଯୁକ୍ତ ପରିବେଶ ଓ ଦିଗ୍‌ଦର୍ଶନ ଦେବା ଗୁରୁଜନମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

## ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥା ସହ ନିଜକୁ ଖାପ ଖୁଆଇ ନେବା

ଆମ ରାଜ୍ୟରେ ପାଞ୍ଚବର୍ଷ ବୟସ ହେଲେ ପ୍ରାଥମିକ ବିଦ୍ୟାଳୟର ପ୍ରଥମ ଶ୍ରେଣୀରେ ଶିଶୁର ନାମ ଲେଖାଇ ଦିଆଯାଏ । ଶିଶୁ ଏହି ସ୍ତରରେ ଗୃହ ପରିବେଶରୁ ବିଦ୍ୟାଳୟ ପରିବେଶରେ ପ୍ରବେଶ କରେ । ଗୃହ ପରିବେଶ ଏକ ମୁକ୍ତ ଓ ଆନନ୍ଦ-ଦାୟକ ପରିବେଶ । ଏହି ପରିବେଶରୁ ହଠାତ୍ ବିଦ୍ୟାଳୟ ପରିବେଶରେ ପ୍ରବେଶ କରି ତା ସହ ଖାପ ଖୁଆଇ ନେବା ପାଇଁ କିଛି ପୂର୍ବ ପ୍ରସ୍ତୁତି ଦରକାର । ପ୍ରାକ୍ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା, ଏହି ପୂର୍ବ ପ୍ରସ୍ତୁତିର ପରିସରଭୁକ୍ତ । ଗୃହ ପରିବେଶ ଓ ବିଦ୍ୟାଳୟ ପରିବେଶ ମଧ୍ୟରେ ଏହା ଏକ ସେତୁ ପରି କାମ କରେ ।

## ଦ୍ୱିଭାଷୀମାନଙ୍କ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବା

ଆମ ରାଜ୍ୟରେ ପ୍ରାୟ ଶତକଡ଼ା ପଚିଶ ଭାଗ ଲୋକ ଆଦିବାସୀ । ଏହି ଆଦିବାସୀମାନେ ପ୍ରାୟ ୬୦ ପ୍ରକାରର କଥିତ ଭାଷାରେ କଥୋପକଥନ କରନ୍ତି । କିନ୍ତୁ ଏମାନଙ୍କ ପିଲା ପ୍ରାଥମିକ ସ୍ତରରୁ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷାଲାଭ କରନ୍ତି । ଏହା ଏକ ସାଧାରଣ ସମସ୍ୟା । ଏମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ବିଦ୍ୟାଳୟରେ ନାମ ଲେଖାଇବା ପରେ ଓଡ଼ିଆରେ କଥାବାର୍ତ୍ତା ଓ ଓଡ଼ିଆ ଭାଷାରେ ଲେଖିବାକୁ ଆରମ୍ଭ କରିଥାଆନ୍ତି । ଫଳରେ ଅନ୍ୟାନ୍ୟ ଓଡ଼ିଆ ଭାଷା ଭାଷୀ ପିଲାଙ୍କ ତୁଳନାରେ ସେମାନଙ୍କ ପାଠ ପଢ଼ାରେ ଅଧିକ ବାଧା ଦେଖାଯାଏ ।

ପ୍ରାକ୍ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା ଏ ଦିଗରେ ବହୁତ ସାହାଯ୍ୟ କରେ । ତିନି ବର୍ଷ ବୟସରୁ ପ୍ରାକ୍ ବିଦ୍ୟାଳୟରେ ଶିଶୁ ଉପସ୍ଥିତ ରହୁଥିବାରୁ ଦୁଇ ତିନିବର୍ଷ

ଧିରି ଓଡ଼ିଆରେ କଥୋପକଥନର ସୁବିଧା ପାଏ । ଫଳରେ ତା'ପାଇଁ ପ୍ରାଥମିକ ବିଦ୍ୟାଳୟରେ ଆଉ ବିଶେଷ ଭାଷା ସମସ୍ୟା ଦେଖାଦିଏ ନାହିଁ ।

ଏତଦ୍‌ବ୍ୟତୀତ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା ପିତାମାତାଙ୍କର ମଧ୍ୟ ଅନେକ ସୁବିଧା କରେ । ଆମ ଦେଶରେ ପିତା, ମାତା ଉଭୟ କୌଣସି କୌଣସି କାମରେ ବ୍ୟସ୍ତ ରହନ୍ତି । ସେମାନଙ୍କ ପାଇଁ ଛୋଟ ଛୋଟ ପିଲାଙ୍କ ରକ୍ଷଣାବେକ୍ଷଣ ସମସ୍ୟା ସୃଷ୍ଟି କରେ । ଫଳରେ ଅନେକ ସମୟରେ ପିତା ମାତାଙ୍କ ମଧ୍ୟରୁ କେହି କିମ୍ବା ବଡ଼ ଭାଇ ଭଉଣୀମାନଙ୍କ ମଧ୍ୟରୁ କେହି ନିଜକାମ ଛାଡ଼ି ଛୋଟ ପିଲାଙ୍କୁ ଜଗି ରହନ୍ତି । ଅନୁସନ୍ଧାନରୁ ଜଣା ପଡ଼ୁଛି ଯେ, ଅନେକ ଝିଅ ଓ ପୁଅ ନିଜ ନିଜର ସାନଭାଇ, ଭଉଣୀମାନଙ୍କ ଯତ୍ନ ନେବା ପାଇଁ ବାଧ୍ୟହୋଇ ନିଜର ପାଠ ପଢ଼ା ଅଧାରୁ ବନ୍ଦ କରନ୍ତି ।

ଏଥିପାଇଁ ଏହାକୁ କୋଠାରି କମିଶନ ଠିକ୍ ଭାବରେ ଅନୁଧ୍ୟାନ କରି କହି-ଥିଲେ ଯେ, ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରଗୁଡ଼ିକର ପ୍ରଧାନ କାମ ହେଉଛି କାମ କରୁଥିବା ମା' ମାନଙ୍କ ପିଲାଙ୍କୁ ଉପଯୁକ୍ତ ପରିବେଶ ମଧ୍ୟରେ ଲାଳନ ପାଳନ କରିବା । ଯେଉଁ ପରିବାରଗୁଡ଼ିକର ଗୃହ ପରିବେଶ ସଙ୍କୀର୍ଣ୍ଣ ଏବଂ ଶିଶୁର ଉପଯୁକ୍ତ ବିକାଶ ପାଇଁ ଅନୁକୂଳ ନୁହେଁ ସେହି ପରିବାର ପିଲାମାନଙ୍କୁ ଉପଯୁକ୍ତ ବୃଦ୍ଧି ବିକାଶ ପାଇଁ ଅନୁକୂଳ ପରିବେଶ ଯୋଗାଇ ଦେବା । କୋଠାରି କମିଶନଙ୍କର ଏ ଉକ୍ତି ଯଥାର୍ଥ ।

ଆଜିର ପ୍ରାକ୍ ବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା ମାଧ୍ୟମରେ ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରରେ ଶିଶୁର ଯତ୍ନ ନିଆଯିବା ଫଳରେ ବାପା ମା' ଏବଂ ବଡ଼ ଭାଇ ଓ ଭଉଣୀ-ମାନେ ସୁବିଧାରେ ନିଜ ନିଜର କାମ ଧନ୍ଦା କରି ପାରୁଛନ୍ତି ।

ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରରେ ବାପା ମା' ମାନେ ମଧ୍ୟ ଶିଶୁର ଉପଯୁକ୍ତ ଯତ୍ନ ନେବା ଦିଗରେ ପ୍ରତ୍ୟକ୍ଷ ଓ ପରୋକ୍ଷ ତାଲିମ୍ ପାଆନ୍ତି । ଶିଶୁ କେତେବେଳେ କ'ଣ ଖାଇବ, କି ପ୍ରକାର ରୋଗ ପ୍ରତିଷେଧକ ଟିକା ବା ଇଂଜେକ୍‌ସନ ନେବ ଏବଂ ସର୍ବୋପରି ତାର ମାନସିକ ବିକାଶ ପାଇଁ କି କି ସୁବ୍ୟବସ୍ଥା କରାଯିବ ତାହା ବାପା ମା'-ମାନଙ୍କୁ ଏହି ପ୍ରାକ୍‌ବିଦ୍ୟାଳୟ କେନ୍ଦ୍ର ମାଧ୍ୟମରେ ଜଣାଇବାର ବ୍ୟବସ୍ଥା ଅଛି ।

ଅଳ୍ପ ବୟସ୍କ ଶିଶୁ ପାଳନରେ ଅଭିଜ୍ଞ ବାପା ମା'ଙ୍କୁ ଏହି ତାଲିମ୍ ବହୁ

ପରିମାଣରେ ସାହାଯ୍ୟ କରେ । ଏଥିପାଇଁ ଅନେକ ବିକାଶଶୀଳ ଦେଶରେ ପିତା ମାତାଙ୍କ ପାଇଁ ବିଧିବଦ୍ଧ ତାଲିମର ବ୍ୟବସ୍ଥା ରହିଛି ।

ଏହି ସବୁ ଦୃଷ୍ଟିରୁ ନିମ୍ନଲିଖିତ ଆବଶ୍ୟକତା ପାଇଁ ପ୍ରାକ୍ ବିଦ୍ୟାଳୟ କାର୍ଯ୍ୟକ୍ରମ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

୧ । ଉପଯୁକ୍ତ ସମୟରେ ଶିଶୁ ପାଇଁ ଆବଶ୍ୟକ ବୃଦ୍ଧି ଓ ବିକାଶ ପାଇଁ ବ୍ୟବସ୍ଥା କରିବା ।

୨ । ଶିଶୁର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ଏକ ମୁକ୍ତ ଓ ଅନୁକୂଳ ପରିବେଶ ଯୋଗାଇ ଦେବା ।

୩ । ଉତ୍ତମ ଓ ସ୍ୱାସ୍ଥ୍ୟକର ଅଭ୍ୟାସ ଗଠନରେ ଶିଶୁର ସହାୟକ ହେବା ।

୪ । ଦଳଗତ କାର୍ଯ୍ୟ ମାଧ୍ୟମରେ ଏକ ସୁସ୍ଥ ସାମାଜିକ ବିକାଶର ଆରମ୍ଭ କରିବା ।

୫ । ଗୃହ ଓ ବିଦ୍ୟାଳୟ ପରିବେଶ ମଧ୍ୟରେ ଥିବା ତାରତମ୍ୟକୁ ଦୂରକରି ଶିଶୁକୁ ବିଦ୍ୟାଳୟ ଅଧ୍ୟୟନ ପାଇଁ ପ୍ରସ୍ତୁତ କରିବା ।

୬ । ବିଦ୍ୟାଳୟ ପରିବେଶକୁ ପ୍ରଭାବିତ କରି ଶିଶୁର ମନ ଉପଯୋଗୀ କରାଇବା

୭ । ଦ୍ୱିଭାଷୀ ଗୋଷ୍ଠୀମାନଙ୍କର ଭାଷା ସମସ୍ୟାକୁ ଲାଘବ କରିବା ।

୮ । ଶ୍ରେଷ୍ଠ ଶ୍ରେଷ୍ଠ ପିଲାର ଯତ୍ନ ନେଇ କାର୍ଯ୍ୟରତ ପିତା ମାତା ଓ ବଡ଼ ଭାଇ ଭଉଣୀମାନଙ୍କୁ ତାଙ୍କର ଦୈନନ୍ଦିନ କାର୍ଯ୍ୟପାଇଁ ସୁବିଧାଦେବା ।

୯ । ପିତା ମାତାମାନଙ୍କୁ ଶିଶୁ ପାଳନ ପାଇଁ ଉପଯୁକ୍ତ ଶିକ୍ଷା ଦେବା ।

୧୦ । ପ୍ରଥମରୁ ଶିଶୁମାନଙ୍କର ଉପଯୁକ୍ତ ଯତ୍ନ ନେଇ ପ୍ରାଥମିକ ବିଦ୍ୟାଳୟ ସ୍ତରରୁ ଅପଚୟ ଓ ଆବଦ୍ଧତାକୁ ହ୍ରାସ କରିବା । ଫଳରେ ନିରକ୍ଷରତା ହ୍ରାସ କରିବାରେ ସହାୟକ ହେବା ।

ଉପରୋକ୍ତ ଆବଶ୍ୟକତା ଦୃଷ୍ଟିରୁ ପ୍ରାକ୍‌ବିଦ୍ୟାଳୟ ଶିକ୍ଷାର ଗୁରୁତ୍ୱ ଅନେକ ବେଶୀ ବୋଲି ଆଗରୁ ବର୍ଣ୍ଣନା କରାଯାଇଛି । ଏହି ସମୟଟି (ଜନ୍ମରୁ ୫ବର୍ଷ) ଶିଶୁର ବିଭିନ୍ନ ଦିଗରୁ

ବିକାଶ କ୍ଷେତ୍ରରେ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ମନୁଷ୍ୟ ଜୀବନର ମୂଳଦୁଆ ପଡ଼ିବା ସଙ୍ଗେ ସଙ୍ଗେ ଶାରୀରିକ, ବୁଦ୍ଧି, ସ୍ୱାସ୍ଥ୍ୟ, ସାମାଜିକ, ଆବେଗିକ ବିକାଶ ଇତ୍ୟାଦି ପାଇଁ କ୍ଷେତ୍ର ପ୍ରସ୍ତୁତ ହୁଏ । ଏହା ଏକ ସମ୍ବେଦନଶୀଳ ଅବସ୍ଥା ଏବଂ ଏହି ସମୟରେ ଶିଶୁର ଯେପରି ବିକାଶ ଆରମ୍ଭ ହୁଏ ତାହା ପରବର୍ତ୍ତୀ ଅବସ୍ଥାରେ ଶିଶୁର ବ୍ୟକ୍ତିତ୍ୱ ଗଠନକୁ ନିୟନ୍ତ୍ରିତ କରେ ।

ଏହି ସମୟରେ ଶିଶୁର ଯେଉଁ ପ୍ରକାର ଅଭ୍ୟାସ ଗଠିତ ହୁଏ, ଯେଉଁ ପ୍ରକାର ସ୍ୱାଭାବିକ ପରିବର୍ତ୍ତନର ମୂଳଦୁଆ ପଡ଼େ ଏବଂ ଯେଉଁ ଯେଉଁ କାର୍ଯ୍ୟ ପ୍ରତି ତାର ଆଗ୍ରହ ସୃଷ୍ଟି ହୁଏ ସେ ସମସ୍ତ ପରବର୍ତ୍ତୀ ଅବସ୍ଥାରେ ପ୍ରାୟ ଅପରିବର୍ତ୍ତିତ ରହନ୍ତି । ଏହା ହେଉଛି ପ୍ରକୃଷ୍ଟ ସମୟ ଯେତେବେଳେ ଶିଶୁ ପାଇଁ ବଡ଼ମାନଙ୍କର ଉପଯୁକ୍ତ ଦିଗ୍‌ଦର୍ଶନ ଆବଶ୍ୟକ ହୋଇଥାଏ ।

ଏହି ପ୍ରାକ୍‌ବିଦ୍ୟାଳୟ ସମୟ, ବିଶେଷକରି ତିନିବର୍ଷରୁ ପାଞ୍ଚବର୍ଷ ବୟସର ଶିଶୁର ଶାରୀରିକ ଗଠନ ଓ ସାମର୍ଥ୍ୟ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ଶିଶୁଠାରେ ଅଧିକ ବଳକା ଶକ୍ତି (Surplus energy) ପରିଲକ୍ଷିତ ହୁଏ । ଏହାର ମୁଖ୍ୟ କାରଣ ହେଲା-ଶିଶୁର ଶରୀର ଜନ୍ମଠାରୁ ଦୁଇବର୍ଷ ବୟସ ପର୍ଯ୍ୟନ୍ତ ଯେପରି ଦ୍ରୁତ ଗତିରେ ବଢ଼େ, ପରବର୍ତ୍ତୀ ଅବସ୍ଥାରେ ଆଉ ଏତେ ଦ୍ରୁତ ଗତିରେ ବଢ଼େ ନାହିଁ । ଫଳରେ ତିନି ବର୍ଷ ବୟସ ବେଳକୁ ତାଠାରେ ଅଧିକ ଶକ୍ତି ସଞ୍ଚିତ ହୋଇ ରହେ । ଏହି ବଳକା ଶକ୍ତିକୁ ଠିକ୍ ଭାବରେ ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ବ୍ୟବହାର କରା ନଗଲେ, ଶିଶୁ ନିଜ ଅଜାଣତରେ ଏହାର ଅପବ୍ୟବହାର କରି ନିଜର ବିକାଶରେ ବାଧା ସୃଷ୍ଟିକରେ । ଏ ଦୃଷ୍ଟିରୁ ମଧ୍ୟ ପ୍ରାକ୍ ବିଦ୍ୟାଳୟ ସମୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ସବୁ ପିଲା ସମାନ ନୁହନ୍ତି । କେତେ ପିଲା ଶାରୀରିକ ସାମର୍ଥ୍ୟ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ବେଶ୍ ଆଗୁଆ ଥିବାବେଳେ ଅନ୍ୟ କେତେ ଏଥିପାଇଁ ବଡ଼ମାନଙ୍କଠାରୁ ସ୍ୱତନ୍ତ୍ର ସାହାଯ୍ୟ ଦରକାର କରନ୍ତି । ଏ ପ୍ରକାର ପିଲାଙ୍କୁ ଏହି ସମୟରେ ସ୍ୱତନ୍ତ୍ର ଦୃଷ୍ଟି ନ ଦେଲେ ପରବର୍ତ୍ତୀ ଅବସ୍ଥାରେ ଏମାନେ ନିଜର ଅଭାବକୁ ପରିପୂରଣ କରିପାରିବେ ନାହିଁ । ସେହିପରି ସ୍ୱତନ୍ତ୍ର ମାନସିକ ଓ ବୌଦ୍ଧିକ ଅବସ୍ଥାରେ ଶିଶୁକୁ ଉପଯୁକ୍ତ ସାହାଯ୍ୟ ଓ ଦିଗ୍‌ଦର୍ଶନ ଅତ୍ୟନ୍ତ ଆବଶ୍ୟକ । ଏ ସମସ୍ତ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ପରିସର ଭୁକ୍ତ ।

## ପ୍ରାକ୍ ବିଦ୍ୟାଳୟ ଶିକ୍ଷାର ପରିସର

ଆଗରୁ କୁହାଯାଇଛି, ପ୍ରାକ୍ ବିଦ୍ୟାଳୟ କାର୍ଯ୍ୟକ୍ରମ ଶିଶୁର ବୃଦ୍ଧି ଓ ବିକାଶ ରେ ମୂଳଦୁଆ ପକାଉଥିବାରୁ ଯଥାର୍ଥରେ ଏହାର ଆରମ୍ଭ ମାତୃଗର୍ଭରୁ ଘଟେ । ତଥାପି ଶୁର ପ୍ରତ୍ୟକ୍ଷ ଯତ୍ନଦୃଷ୍ଟିରୁ ଏହା ଜନ୍ମଠାରୁ ପାଞ୍ଚବର୍ଷ ବୟସ ପର୍ଯ୍ୟନ୍ତ ବ୍ୟାପ୍ତ । କୌଣସି ଶରେ ଏହା ସାତବର୍ଷ ବୟସ ପର୍ଯ୍ୟନ୍ତ ଧରାଯାଇଥାଏ । ତେବେ ଜନ୍ମଠାରୁ ନୁଷ୍ଠାନିକ ବିଦ୍ୟାଳୟ ପ୍ରବେଶ ସମୟକୁ ଯଥାର୍ଥରେ ପ୍ରାକ୍-ବିଦ୍ୟାଳୟ ସମୟ କୁହାଯାଇପାରେ । ଆମ ଦେଶରେ ଯେତେ ପ୍ରକାରର ନର୍ସରୀ ଏବଂ କେଜି ସ୍କୁଲ (Nursery and Kinder Garten School) ଦେଖାଯାଏ, ଏ ସମସ୍ତ ପ୍ରାକ୍-ବିଦ୍ୟାଳୟ ଶିକ୍ଷା ପର୍ଯ୍ୟାୟଭୁକ୍ତ ।

ବିଭିନ୍ନ ସ୍ଥାନରେ ଏବଂ ବିଭିନ୍ନ ରାଜ୍ୟରେ ଏହାର ନାମ ଭିନ୍ନ ଭିନ୍ନ । ନର୍ସରୀ ସ୍କୁଲ, କିଣ୍ଡର ଗାର୍ଟେନ ସ୍କୁଲ, ଡେ-କେୟାର ସେଣ୍ଟର, ଅଙ୍ଗନୱାଡ଼ି, ବାଲୱାଡ଼ି, ବାଲଚର, ବାଲ୍ ଭବନ, ବାଲ୍ ମନ୍ଦିର, ଖେଳଘର, ଇ ସି ଇ ସେଣ୍ଟର ଏବଂ କ୍ରେସ୍ ଏ ସମସ୍ତ ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମ ପରିସରଭୁକ୍ତ । ପ୍ରାକ୍-ବିଦ୍ୟାଳୟ ଶିକ୍ଷା କାର୍ଯ୍ୟକ୍ରମ ମୁଖ୍ୟତଃ ଘରୋଇ ସଂସ୍ଥା ଦ୍ୱାରା ପରିଚାଳିତ ହେଉଥିବାରୁ ସେଗୁଡ଼ିକର ନାମ ଭିନ୍ନ ଭିନ୍ନ ଦେଖାଯାଏ । ହେଲେ ପ୍ରାୟ ଏ ସମସ୍ତ ଅନୁଷ୍ଠାନରେ ତିନିବର୍ଷରୁ ପାଞ୍ଚବର୍ଷ ବୟସର ପିଲାଙ୍କୁ ଦେଖିବାକୁ ମିଳେ । ଡେକେୟାର ସେଣ୍ଟର ଓ କ୍ରେସ ଭଳି କେତେକ ଅନୁଷ୍ଠାନରେ ଆହୁରି ସାନ ପିଲାଙ୍କୁ ନେବାର ବ୍ୟବସ୍ଥା ଥିଲେ ମଧ୍ୟ, କେତେକ ଶିଳାଞ୍ଚଳକୁ ଛାଡ଼ିଦେଲେ ପ୍ରାୟ ଏ ପ୍ରକାର ବ୍ୟବସ୍ଥା ଆମ ଦେଶରେ ଖୁବ୍ କମ୍ ଦେଖାଯାଏ । ଏହାର ପ୍ରଧାନ କାରଣ ହେଲା, ତିନିବର୍ଷ ବୟସରୁ ସାନ ଶିଶୁକୁ କେନ୍ଦ୍ରରେ ରଖିଲେ ସେମାନଙ୍କ ପ୍ରତି ଅଧିକ ବ୍ୟକ୍ତିଗତ ଦୃଷ୍ଟିଦେବାକୁ ପଡ଼ିଥାଏ । ଏଥିପାଇଁ ଅଧିକ ସଂଖ୍ୟକ ତତ୍ତ୍ୱାବଧାରିକା ଓ ଶିକ୍ଷୟିତ୍ରୀ ଆବଶ୍ୟକ । ସାନ ସାନ ଶିଶୁଙ୍କ ଉପଯୁକ୍ତ ଯତ୍ନ ପାଇଁ ଶିକ୍ଷୟିତ୍ରୀଙ୍କର ବିଶେଷ ତାଲିମ ଦରକାର । ଏମାନଙ୍କର ଉପଯୁକ୍ତ ଲାଳନପାଳନ ପାଇଁ କେନ୍ଦ୍ରରେ ଅଧିକ ବ୍ୟବସ୍ଥା ଦରକାର ।

ଆମ ରାଜ୍ୟ ଏକ ଆଦିବାସୀ ବହୁଳ ରାଜ୍ୟ । ପୁଣି ଏହାର ଅଧିକାଂଶ ଅଧିବାସୀଙ୍କର ଜୀବନ ଧାରଣର ମାନ ନିମ୍ନ । ଏଥିପାଇଁ ଅଧିବାସୀମାନଙ୍କ ମଧ୍ୟରେ ସାମାଜିକ ଓ ଆର୍ଥିକ ଅବସ୍ଥାରେ ଅନେକ ତାରତମ୍ୟ ଦେଖାଯାଏ ।

ସେ ଦୃଷ୍ଟିରୁ ବିଭିନ୍ନ ଗୋଷ୍ଠୀର ପିଲା ମଧ୍ୟରେ ଅସମତା ମଧ୍ୟ ଅନେକ ସେଥିପାଇଁ ଏକ ପ୍ରକାର ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମ ସବୁଗୋଷ୍ଠୀର ପିଲା ପାଇଁ ଉପଯୁକ୍ତ ହୋଇ ନପାରେ । ଆଦିବାସୀର ସ୍ୱତନ୍ତ୍ର ଜୀବନ ଯାପନ ପ୍ରଣାଳୀ ନେଇ ତାଙ୍କ ପିଲଙ୍କ ପାଇଁ ଯେଉଁ ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମ ହେବ, ତାହା ସହରର ପିଲା ପାଇଁ କିମ୍ବା ଗାଁ ଗହଳର ଅଣ ଆଦିବାସୀ ପିଲଙ୍କ ପାଇଁ ଉପଯୁକ୍ତ ହେବ ନାହିଁ । ସାମାଜିକ ଓ ଆର୍ଥିକ ଅବସ୍ଥା ନେଇ ଗୋଷ୍ଠୀ ବିଶେଷରେ ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମ ଭିନ୍ନ ରୂପ ନେବା ସ୍ୱାଭାବିକ । ପ୍ରତିଗୋଷ୍ଠୀର ପିଲଙ୍କର ଆବଶ୍ୟକତାକୁ ନେଇ ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମର ରୂପରେଖ ଦିଆଗଲେ, ଏହା ପିଲମାନଙ୍କର ବୃଦ୍ଧି ଓ ବିକାଶ ପାଇଁ ଖୁବ୍ ଉପଯୋଗୀ ହେବ, ଏଥିରେ ସନ୍ଦେହ ନାହିଁ ।

ଆମ ରାଜ୍ୟ ପ୍ରାକୃତିକ ସମ୍ପଦରେ ପୂର୍ଣ୍ଣ । ପ୍ରାକ୍-ବିଦ୍ୟାଳୟ କେନ୍ଦ୍ରଟିଏ ପରିଚାଳନା କରିବା ପାଇଁ ପାଶ୍ଚାତ୍ୟ ଦେଶ ପରି ଏତେ ଅର୍ଥ ଆବଶ୍ୟକ ହେବ ନାହିଁ । କେନ୍ଦ୍ରରେ ଏନ୍. ସି. ଇ. ଆର୍. ଟି. (N.C.E.R.T.) ଏବଂ ରାଜ୍ୟଗୁଡ଼ିକରେ ଏସ୍.ସି.ଇ.ଆର୍. ଟି. (S.C.E.R.T. ଏବଂ ଅନ୍ୟ ଉନ୍ନୟନ ସଂସ୍ଥାଗୁଡ଼ିକ ମାଧ୍ୟମରେ ପରୀକ୍ଷା ନିରୀକ୍ଷାରୁ ଯାହା ଜଣାପଡ଼ିଛି । ଆମ ଅଞ୍ଚଳରେ ମିଳୁଥିବା ଅନେକ ପ୍ରାକୃତିକ ଏବଂ ଅଦରକାରୀ ପଦାର୍ଥକୁ ଆମେ ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟ ପାଇଁ ଶିକ୍ଷା ଉପକରଣ ରୂପେ ବ୍ୟବହାର କରିପାରିବା । ଅନୁକୂଳ ଜଳବାୟୁ ଯୋଗୁ ଏହି କାର୍ଯ୍ୟକ୍ରମ ପ୍ରକୃତି କୋଳରେ ମୁକ୍ତ ଆକାଶ ତଳେ ଚାଲିପାରିବ । ଆମର ଶିକ୍ଷକ ଶିକ୍ଷୟିତ୍ରୀ ଏହି ପାଠ୍ୟକ୍ରମ ମାଧ୍ୟମରେ ବା ଅନ୍ୟ କୌଣସି ଯୋଜନା ମାଧ୍ୟମରେ ଉପଯୁକ୍ତ ଦିଗ୍‌ଦର୍ଶନ ପାଇଁ ନିଷ୍ଠାର ସହ କାର୍ଯ୍ୟ କଲେ, ଏହି ପ୍ରାକ୍-ବିଦ୍ୟାଳୟ କାର୍ଯ୍ୟକ୍ରମ, ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ ପରି ଏକ ଗୁରୁତ୍ୱପୂର୍ଣ୍ଣ ଯୋଜନା ହେବାରେ ସନ୍ଦେହ ନାହିଁ । ଆମ ରାଜ୍ୟର ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ପ୍ରାୟ ଚାଳିଶ ହଜାର । ଏହି ବିଦ୍ୟାଳୟରେ ନାମ ଲେଖା ପୂର୍ବରୁ ସମସ୍ତ ଶିଶୁଙ୍କ ପାଇଁ ପ୍ରାକ୍ ବିଦ୍ୟାଳୟ ତାଲିମର ବ୍ୟବସ୍ଥା କଲେ, ଅତି କମ୍‌ରେ ଚାଳିଶ ହଜାର କେନ୍ଦ୍ର ଖୋଲିବା ପାଇଁ ହେବ ଏବଂ ଏଥିପାଇଁ ଅତି କମ୍‌ରେ ଚାଳିଶ ହଜାର ତାଲିମ୍‌ପ୍ରାପ୍ତ ଶିକ୍ଷକ ଓ ଶିକ୍ଷୟିତ୍ରୀ ଆବଶ୍ୟକ ।

ଏ ଦୃଷ୍ଟିରୁ ପ୍ରାକ୍-ବିଦ୍ୟାଳୟ ଶିକ୍ଷକ ଓ ଶିକ୍ଷୟିତ୍ରୀ ତାଲିମ ଅନୁଷ୍ଠାନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଚାକିରି ପୂର୍ବରୁ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ତାଲିମ (Pre-service Training) ଯେପରି ଗୁରୁତ୍ୱପୂର୍ଣ୍ଣ, ଚାକିରି କାଳରେ ନିଜ ଦକ୍ଷତାର

ଅଭିବୃନ୍ଦଙ୍କ ପାଇଁ ସ୍ୱଳ୍ପକାଳ ବ୍ୟାପି (Short Orientation Courses) ତାଲିମ ମଧ୍ୟ ସେହିପରି ଆବଶ୍ୟକ । ଏହା ଫଳରେ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ନିରବଚ୍ଛିନ୍ନ ଭାବେ ଉପଯୁକ୍ତ ଏବଂ ସମୟୋପଯୋଗୀ ଦିଗ୍‌ଦର୍ଶନ ପାଇପାରିବେ ।

## ଶିଶୁର ଆବଶ୍ୟକତା ଏବଂ ଅଧିକାର

ଆମ ଦେଶ ଏକ ଗଣତନ୍ତ୍ର ଦେଶ । ଏଠାରେ ପ୍ରତି ନାଗରିକର ବଞ୍ଚି-ରହିବାର ଅଧିକାର ଅଛି । ବଞ୍ଚିରହିବା ପାଇଁ କେତେକ ଆବଶ୍ୟକତା ଅଛି । ଏହି ମୌଳିକ ଆବଶ୍ୟକତାଗୁଡ଼ିକର ପରିପୂରଣ ପାଇଁ ଆମ ସମାଜ ସମସ୍ତଙ୍କୁ ଅଧିକାର ଦେଇଛି । ମାନବ ଶିଶୁ ମଧ୍ୟ ଏ ଅଧିକାର୍‌ରୁ ବାଦ୍ ଯାଇନାହିଁ । ତାହାର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ଯାହା ଯାହା ଆବଶ୍ୟକ, ସେ ସବୁ ପାଇବା ପାଇଁ ସେ ହକ୍‌ଦାର୍ । ପଶୁ ପକ୍ଷୀର ଶାବକମାନଙ୍କ ତୁଳନାରେ ମାନବ ଶିଶୁ ଅନ୍ୟ ଉପରେ ଶୈଶବ କାଳରେ ଅଧିକ ନିର୍ଭରଶୀଳ । ଏହାର ବୃଦ୍ଧି ଓ ବିକାଶ ପ୍ରକ୍ରିୟା ଅଧିକ ଉନ୍ନତ ହୋଇଥିବାରୁ ଅଧିକ ଜଟିଳ ଏବଂ ସମୟସାପେକ୍ଷ । ବାଛୁରୀଟିଏ ଜନ୍ମ ହେବା ପରେ କେତେଘଣ୍ଟା ଭିତରେ ଡେଇଁବାକୁ ଆରମ୍ଭ କରେ । କିନ୍ତୁ ମାନବ ଶିଶୁକୁ ଚାଲିବା ପାଇଁ ବର୍ଷାଧିକ ସମୟ ଲାଗେ । ଏହି ସମୟ ଭିତରେ ସେ ମା, ବାପା ଏବଂ ଅନ୍ୟାନ୍ୟ ଗୁରୁଜନଙ୍କ ଠାରୁ ଉପଯୁକ୍ତ ପରିଚର୍ଯ୍ୟା ଦରକାର କରେ । ଏହି ପରିଚର୍ଯ୍ୟା ତା'ର ବୃଦ୍ଧି ଓ ବିକାଶ ପାଇଁ ଅତ୍ୟାବଶ୍ୟକ ଏବଂ ଏସବୁ ପାଇବା ପାଇଁ ସେ ହକ୍‌ଦାର । ସେହିପରି ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ସୁଷମ ଖାଦ୍ୟପେୟ, ସ୍ୱାସ୍ଥ୍ୟକର ପରିବେଶ, ରୋଗ ପ୍ରତିଷେଧ ପାଇଁ ଉପଯୁକ୍ତ ପରିବେଶ, ବିଦ୍ୟା ଅଧ୍ୟୟନ ପାଇଁ ଉପଯୁକ୍ତ ବ୍ୟବସ୍ଥା ଓ ସର୍ବୋପରି ବଡ଼ମାନଙ୍କଠାରୁ ଆବଶ୍ୟକ ସ୍ନେହ, ସହାନୁଭୂତି ଏବଂ ଆଦର ଯତ୍ନ ପାଇବା ତାର ଅଧିକାରଭୁକ୍ତ । ଆଜି ଯେଉଁମାନେ ଉପଯୁକ୍ତ ଭାବେ ବିକାଶଲାଭ କରିଛନ୍ତି, ସେମାନେ ନିଶ୍ଚିତ ଭାବେ ଶୈଶବ କାଳରେ ଆବଶ୍ୟକ ଯତ୍ନ ଓ ପରିଚର୍ଯ୍ୟା ପାଇଛନ୍ତି । ଯେଉଁମାନେ ଠିକ୍‌ଭାବେ ବିକାଶ ଲାଭ କରିନାହାନ୍ତି । ସେମାନେ ଶିଶୁ ଅବସ୍ଥାରେ ଉପଯୁକ୍ତ ଯତ୍ନ ପାଇ ନଥିବାରୁ ଏବେ ବଡ଼ମାନଙ୍କୁ ଦାୟୀ କରୁଛନ୍ତି । ଏ ଦୃଷ୍ଟିରୁ ଆମର ଶିଶୁ, ଯେ କି ଭବିଷ୍ୟତର ନାଗରିକ ତାର ସର୍ବାଙ୍ଗୀନ ଉନ୍ନତି ପାଇଁ ଆମକୁ ତାର ଆବଶ୍ୟକତା ପ୍ରତି ସଜାଗ ହେବାକୁ ପଡ଼ିବ ।

ପିଲାର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ଜାତିସଂଘ ଏବେ ଏକ ଘୋଷଣା ନାମାରେ, ତାଙ୍କର କେତେକ ଅଧିକାର ପ୍ରତି ଗୁରୁତ୍ୱ ଦେଇଛନ୍ତି । ଏହି ଘୋଷଣା ଉପରେ ଶିଶୁର ବୃଦ୍ଧି ଓ ବିକାଶ ସହ ସମ୍ପୃକ୍ତ ଥିବା ସମସ୍ତ କର୍ମୀ ଗୁରୁତ୍ୱ ଦେବା ଆବଶ୍ୟକ । ସେଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

୧। ଉପଯୁକ୍ତ ସ୍ନେହ, ପ୍ରେମ ଏବଂ ବୁଝାମଣା ପାଇବାର ଅଧିକାର ।

୨। ଯଥେଷ୍ଟ ପୁଷ୍ଟି ଏବଂ ସ୍ୱାସ୍ଥ୍ୟଗତ ଯତ୍ନ ପାଇବା ଅଧିକାର ।

୩। ଅବୈତନିକ ଶିକ୍ଷା ପାଇବାର ସୁଯୋଗ ।

୪। ଖେଳ ଓ ମନୋରଞ୍ଜନ ପାଇଁ ପୂର୍ଣ୍ଣ ସୁଯୋଗ ।

୫। ସମାଜରେ ନିଜର ପରିଚୟ ଓ ଜାତୀୟତାର ଅଧିକାର ।

୬। ଅକର୍ମଣ୍ୟ ଶିଶୁ ପାଇଁ ସ୍ୱତନ୍ତ୍ର ଯତ୍ନ ।

୭। କୌଣସି ଦୁର୍ଘଟଣାରେ ଉପଯୁକ୍ତ ସେବା ପାଇବାରେ ଅଗ୍ରାଧିକାର ।

୮। ସମାଜରେ ଜଣେ ଉତ୍ତମ ନାଗରିକ ହେବାପାଇଁ ଉପଯୁକ୍ତ ଶିକ୍ଷା ଏବଂ ଅନ୍ତର୍ନିହିତ ଗୁଣାବଳୀର ବିକାଶ ପାଇଁ ଆବଶ୍ୟକ ସୁଯୋଗ ।

୯। ଏକ ଶାନ୍ତ ବାତାବରଣ ଏବଂ ବିଶ୍ୱଭ୍ରାତୃଭାବ ଭିତରେ ବଢ଼ିବାରେ ସୁଯୋଗ ।

୧୦। ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଗୋଷ୍ଠୀ, ଦେଶ ଓ ସାମାଜିକ ସ୍ଥିତି ନିର୍ବିଶେଷରେ ଏହି ଅଧିକାର ପାଇବାର ସୁବ୍ୟବସ୍ଥା ।

ଆନ୍ତର୍ଜାତିକ ଶିଶୁବର୍ଷ । ଏହା ଉପରେ ବିଶେଷ ଗୁରୁତ୍ୱ ଆରୋପ କରି, ଯୋଜନାକାରୀମାନେ ଯେପରି ଶିଶୁମାନଙ୍କର ଉପଯୁକ୍ତ ବୃଦ୍ଧି ଓ ବିକାଶ ପାଇଁ ଆବଶ୍ୟକ ସୁବ୍ୟବସ୍ଥା କରନ୍ତି । ସେଥିପାଇଁ ଘୋଷଣାନାମା ପ୍ରକାଶ କରିଛନ୍ତି ।

ମିଳିତ ଜାତିସଂଘ ପରି ଶିଶୁବିକାଶ ସହ ସମ୍ପୃକ୍ତ ଥିବା ବହୁ ସଂସ୍ଥା ଶିଶୁ-ମାନଙ୍କର ଆବଶ୍ୟକତା ଓ ଅଧିକାର ଉପରେ ନିଜ ନିଜର ମତବ୍ୟକ୍ତ କଲେଣି ।

ବିଶିଷ୍ଟ ଶିକ୍ଷାବିତ୍ ରୁଷୋ କହିଥିଲେ । "ମାନବ ମୁକ୍ତ ଭାବେ ଜନ୍ମଲାଭ କରିଥିଲେ ମଧ୍ୟ, ଏ ସମାଜ ପ୍ରତି ପଦକ୍ଷେପରେ ତାକୁ ବେଡ଼ି ପିନ୍ଧାଇ ଦେଇଛୁ । ଏ ଉକ୍ତିଟି ମାନବ ଶିଶୁ ପାଇଁ ବେଶି ପ୍ରଯୁଜ୍ୟ । ବାପା, ମା' ଓ ଅନ୍ୟାନ୍ୟ ଗୁରୁଜନ, ଶିଶୁର ଉପଯୁକ୍ତ ବିକାଶ ନାମରେ ତାର ଗତିବିଧି, ଆହାର ବିହାରକୁ ଅନେକ ସମୟରେ ଅତି ବେଶୀ ନିୟନ୍ତ୍ରିତ କରିଦିଅନ୍ତି । ସେତେବେଳେ ଭାବି ନଥାନ୍ତି ସତେ ଯେପରି ଶିଶୁର ନିଜଇଚ୍ଛା କିଛିନାହିଁ କିମ୍ବା ଇଚ୍ଛା ଥିଲେ ମଧ୍ୟ ତାହା ତାର ବୃଦ୍ଧି ଓ ବିକାଶ ପାଇଁ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏ ପ୍ରକାର ଚିନ୍ତାଧାରା ଅନେକ ସମୟରେ ମାନବ ଶିଶୁର ବିକାଶରେ ଅନ୍ତରାୟ ସୃଷ୍ଟି କରିଥାଏ । ବାପା ମା'ମାନେ ଶିଶୁର କାର୍ଯ୍ୟ କଳାପ ଏବଂ ଖାଦ୍ୟପେୟର ନିୟନ୍ତ୍ରଣ କରିବା ସମୟରେ ନିଜ ପିଲାଦିନର ଅନୁଭୂତି-ଗୁଡ଼ିକୁ ମନେ ପକାଇଲେ ସେମାନଙ୍କର ନିୟନ୍ତ୍ରଣ ଅଧିକ କୋହଳ ହୋଇପାରିବ। ଅନ୍ୟ ପକ୍ଷରେ ଶିଶୁର ଆବଶ୍ୟକତା କ'ଣ ତାହା ବାପା, ମା'ମାନଙ୍କ ଅପେକ୍ଷା ଶିଶୁ ନିଜେ ଅଧିକ ପ୍ରକାଶ କରିପାରେ । ଶିଶୁକୁ ସ୍ୱାଧୀନତା ଦେଲେ, ସେ ତା'ର ଆବଶ୍ୟକତାକୁ ସଫଳ ଭାବେ ବ୍ୟକ୍ତ କରିପାରିବ ଏବଂ ତଦନୁସାରୀ ଉପଯୁକ୍ତ ପଦକ୍ଷେପ ତା' ପାଇଁ ଅଧିକ ମଙ୍ଗଳପ୍ରଦ ଏବଂ କଲ୍ୟାଣକାରକ ହେବ । ଏସବୁ ଶିଶୁର ମାନସିକ । ବିଶେଷ କରି ଆବେଗିକ ବିକାଶ ପାଇଁ ଅତ୍ୟାବଶ୍ୟକ । ବାପା, ମା' ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ଅନ୍ୟାନ୍ୟ ଗୁରୁଜନ ଏସବୁ ପ୍ରତି ଉପଯୁକ୍ତ ଧ୍ୟାନ ଦେବା ଉଚିତ । ଏପରି ହେଲେ ଶିଶୁମାନଙ୍କର ବୃଦ୍ଧି ଓ ବିକାଶ ତ୍ୱରାନ୍ୱିତ ତଥା ବାସ୍ତବଧର୍ମୀ ହେବ ।



# ଦ୍ୱିତୀୟ ଅଧ୍ୟାୟ

## ଶିଶୁ ଓ ତାହାର ଆଚରଣ

### ଆଚରଣ ସମ୍ବନ୍ଧୀୟ ଅଧ୍ୟୟନ

ମନୁଷ୍ୟର କୌତୂହଳ ଓ ଅନୁସନ୍ଧିତ୍ସାରୁ ସବୁ ପ୍ରକାର ଜ୍ଞାନ ଓ ବିଜ୍ଞାନର ଉତ୍ପତ୍ତି ଅତି ପ୍ରାଚୀନ କାଳରୁ ମନୁଷ୍ୟ ପ୍ରକୃତିର ରହସ୍ୟ ଉନ୍ମୋଚନ କରିବା ପାଇଁ ସର୍ବଦା ତତ୍ପର ହୋଇ ଆସିଛି । ପ୍ରକୃତି ବଡ଼ ବିଚିତ୍ର । ଏହାକୁ ଅନୁଧ୍ୟାନ କରିବା ଓ ଏହାର ବିଭିନ୍ନ ବିଭାଗକୁ ପୁଙ୍ଖାନୁପୁଙ୍ଖ ଭାବରେ ବିଶ୍ଳେଷଣ କରିବା ହିଁ ବିଜ୍ଞାନର ଲକ୍ଷ୍ୟ । ବିଭିନ୍ନ ଦୃଷ୍ଟିକୋଣରୁ ମନୁଷ୍ୟ ଯେତେବେଳେ ପ୍ରକୃତିକୁ ଅଧ୍ୟୟନ କରି ବସିଲା ସେତେବେଳେ ବିଭିନ୍ନ ପ୍ରକାର ବିଜ୍ଞାନର ସୃଷ୍ଟି ହେଲା, ଯଥା—ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ପ୍ରାଣୀ ବିଜ୍ଞାନ, ଭୂତତ୍ତ୍ୱ, ନୃତତ୍ତ୍ୱ, ସମାଜ ବିଜ୍ଞାନ, ମନୋବିଜ୍ଞାନ ଇତ୍ୟାଦି ।

ବିଜ୍ଞାନ ଓ ମନୋବିଜ୍ଞାନ ଉଭୟ, ମନୁଷ୍ୟର ଅନୁଭୂତି ସହିତ ସମ୍ପୃକ୍ତ ଯେଉଁ ବସ୍ତୁକୁ ଓ ବାହ୍ୟ ପରିବେଶକୁ ମନୁଷ୍ୟ ଅନୁଭବ କରେ, ବିଜ୍ଞାନ ତାହାର ବସ୍ତୁଗତ ଦିଗକୁ ପରୀକ୍ଷା ଓ ବିଶ୍ଳେଷଣ କରେ । କିନ୍ତୁ ମନୋବିଜ୍ଞାନ ଅନୁଭବ କରୁଥିବା ବ୍ୟକ୍ତି ବା ଅନୁଭବୀର ଦୃଷ୍ଟିକୋଣରୁ ଅନୁଭୂତିକୁ ହୃଦୟଙ୍ଗମ କରି ଏହାର ସମୀକ୍ଷା ବା ବିଶ୍ଳେଷଣ କରିଥାଏ । ସୁତରାଂ ମନୋବିଜ୍ଞାନ, ବିଜ୍ଞାନର ଏକ ଅଂଶ ବିଶେଷ । ପ୍ରକୃତରେ ଏହା ବ୍ୟକ୍ତିବିଶେଷର ଅନୁଭୂତି ଓ ଆଚରଣ ସମ୍ବନ୍ଧୀୟ ବିଜ୍ଞାନ । ମନୋ-ବିଜ୍ଞାନରେ ମନୁଷ୍ୟର ସମୁଦାୟ ଆଚରଣ ତଥା ଗତିବିଧିକୁ ଅଧ୍ୟୟନ କରାଯାଏ ।

### ମନୋବିଜ୍ଞାନର ସଂଜ୍ଞା (Definition of Psychology)

ମନୋବିଜ୍ଞାନ (Psychology) ଶବ୍ଦଟି psyche ଅର୍ଥାତ୍ ଆତ୍ମା ଓ logus ଅର୍ଥାତ୍ ବିଜ୍ଞାନ ଶବ୍ଦ ଦ୍ୱୟର ମିଶ୍ରଣରୁ ସୃଷ୍ଟି ହୋଇଛି । ପ୍ରାଚୀନ ଗ୍ରୀସ୍‌ରେ

ମନୋବିଜ୍ଞାନର ଅର୍ଥ 'ଆତ୍ମା ସମ୍ବନ୍ଧୀୟ ଜ୍ଞାନ' ବୋଲି ଗ୍ରହଣ କରାଯାଉଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦାର୍ଶନିକମାନେ ବିଶ୍ୱାସ କରୁଥିଲେ ଯେ 'ଆତ୍ମା' ହିଁ ମନୋବିଜ୍ଞାନର ଆଲୋଚ୍ୟ ବିଷୟବସ୍ତୁ । ଊନବିଂଶ ଶତାବ୍ଦୀରେ ମନସ୍ତତ୍ତ୍ୱବିଦ୍‌ମାନେ ଏହି ସଂଜ୍ଞାକୁ ପ୍ରତ୍ୟାଖ୍ୟାନ କଲେ ଏବଂ ମତ ଦେଲେ ଯେ ମନୋବିଜ୍ଞାନ ହେଉଛି ମନ ସମ୍ବନ୍ଧୀୟ ବିଜ୍ଞାନ ।

'ମନ' ଶବ୍ଦଟି ଅସ୍ପଷ୍ଟ । ଏହାକୁ ଦେଖି ହୁଏ ନାହିଁ, ଛୁଇଁ ହୁଏ ନାହିଁ କି ପରୀକ୍ଷାଗାର ମଧ୍ୟରେ ରଖି ପରୀକ୍ଷା କରିହୁଏନାହିଁ । ତେଣୁ 'ମନ'କୁ ମନୋବିଜ୍ଞାନ ସଂଜ୍ଞାରେ ସ୍ଥାନ ଦେବା ଠିକ୍ ନୁହେଁ ବୋଲି ବିଂଶ ଶତାବ୍ଦୀର ମନସ୍ତତ୍ତ୍ୱବିଦ୍‌ମାନେ ଉପଲବ୍ଧି କଲେ । ପୁଣି ମନୋବିଜ୍ଞାନରେ କେବଳ ମାନସିକ ପ୍ରକ୍ରିୟାକୁ ଅଧ୍ୟୟନ କରାନଯାଇ ଶାରୀରିକ ଆଚରଣକୁ ମଧ୍ୟ ବିଶ୍ଳେଷଣ କରାଯାଏ । କାରଣ ମାନସିକ ପ୍ରକ୍ରିୟାଗୁଡ଼ିକ ଶାରୀରିକ ଆଚରଣ ମାଧ୍ୟମରେ ପ୍ରକାଶ ଲାଭ କରେ । ମନୁଷ୍ୟ ବ୍ୟତୀତ ଅନ୍ୟ ପ୍ରାଣୀ, ଶିଶୁ ଓ ଅସ୍ୱାଭାବିକ ପ୍ରକୃତିର ବ୍ୟକ୍ତିମାନଙ୍କ ମନକୁ ବିଶ୍ଳେଷଣ କରିବାକୁ ହେଲେ, ତାଙ୍କର ଶାରୀରିକ ଆଚରଣକୁ ହିଁ ଅଧ୍ୟୟନ କରିବାକୁ ପଡ଼ିବ । ମନୋବିଜ୍ଞାନରେ ଶରୀର ଓ ମନ ଉଭୟର ବିଶ୍ଳେଷଣ ଆବଶ୍ୟକ । ତେଣୁ ମନୋବିଜ୍ଞାନକୁ କେବଳ ମନ ସମ୍ବନ୍ଧୀୟ ଜ୍ଞାନରୂପେ ଗ୍ରହଣ କରାଯାଇପାରିବ ନାହିଁ ।

କେତେକଙ୍କ ମତରେ ମନୋବିଜ୍ଞାନ ମନୁଷ୍ୟକୁ ଅଧ୍ୟୟନ କରିବା ପାଇଁ ଏକ ବିଜ୍ଞାନ । ଏ ସଂଜ୍ଞାର ପରିସର ଏତେ ବ୍ୟାପକ ଯେ ଏହାକୁ ଆଧାର କରି ମନୋବିଜ୍ଞାନକୁ ନୃତତ୍ତ୍ୱ(anthropology) ବା ଶରୀରତତ୍ତ୍ୱ physiology) ଠାରୁ ପୃଥକ୍ କରିହେବ ନାହିଁ । ତେଣୁ ଏ ସଂଜ୍ଞାଟି ମଧ୍ୟ ଗ୍ରହଣଯୋଗ୍ୟ ହେଲନାହିଁ ।

"ଯେଉଁ ମନୋବିଜ୍ଞାନ ଦର୍ଶନ ଗୃହରେ ଜନ୍ମଲାଭ କଲା, ମନୋବିଜ୍ଞାନୀମାନଙ୍କ ଗବେଷଣା ଫଳରେ ତାହା କାଳକ୍ରମେ ଏକ ସ୍ୱତନ୍ତ୍ର ବିଜ୍ଞାନ ରୂପେ ପ୍ରତିଷ୍ଠିତ ହେଲା । ଉଇଲହେଲମ୍ ଉଣ୍ଡ୍‌ଙ୍କୁ (Wilhelm Wundt ମନୋବିଜ୍ଞାନର ପ୍ରତିଷ୍ଠାତା ରୂପେ ଗ୍ରହଣ କରାଯାଏ । ତାଙ୍କ ମତରେ ଚେତନ ଅନୁଭୂତିକୁ ଅଧ୍ୟୟନ କରିବା ହିଁ ମନୋବିଜ୍ଞାନ । ସୁତରାଂ ମନୁଷ୍ୟକୁ ଅଧ୍ୟୟନ କରିବାକୁ ହେଲେ ତାର ସଚେତନ ଅନୁଭୂତିଗୁଡ଼ିକର ଅଧ୍ୟୟନ ଓ ବିଶ୍ଳେଷଣ ଆବଶ୍ୟକ । ଅନ୍ତର୍ନିରୀକ୍ଷଣ (introspection) ପଦ୍ଧତି ସାହାଯ୍ୟରେ ସଚେତନ ଅନୁଭୂତି ସମ୍ବନ୍ଧରେ ଜ୍ଞାନଲାଭ କରିହେବ । ଏ ସଂଜ୍ଞାରେ ବିଭିନ୍ନ ପ୍ରକାର ତ୍ରୁଟି ଲକ୍ଷ୍ୟ କରାଗଲା । ପ୍ରଥମତଃ ମନୋ-

ବିଜ୍ଞାନୀ ଫ୍ରଏଡଙ୍କ (Freud) ମତରେ ମନୁଷ୍ୟର ସମସ୍ତ କାର୍ଯ୍ୟକଳାପ ତାର ଚେତନ ଅବସ୍ଥାରେ ନଥାଏ । କାର୍ଯ୍ୟସମୂହର ମାତ୍ର $\frac{1}{10}$ ଅଂଶ ବିଷୟରେ ମନୁଷ୍ୟ ସଚେତନ ଥାଏ । ଅବଶିଷ୍ଟ କାର୍ଯ୍ୟ ଅଚେତନ (unconscious) ବା ଅବଚେତନ (subconscious) ଅବସ୍ଥାରେ ହିଁ ହୋଇଥାଏ । ଉଦାହରଣ ସ୍ୱରୂପ ସ୍ୱପ୍ନ ଦେଖିବା, ଜିହ୍ୱା ସ୍ଖଳନ ହେବା, ବନ୍ଧୁଙ୍କ ନାଁ ମନେ ନପଡ଼ିବା, ଦରକାରୀ ଜିନିଷ ହଜାଇବା ବା ବନ୍ଧୁଙ୍କ ଘରେ ଛତି ଆସିବା ଇତ୍ୟାଦି ଅବଚେତନ ବା ଅଚେତନ ମନର ପ୍ରତିଫଳନ । ଦ୍ୱିତୀୟତଃ, ସଚେତନତାର ଅଧ୍ୟୟନ କେବଳ ଅନ୍ତର୍ନିରୀକ୍ଷଣ ଦ୍ୱାରା ସମ୍ଭବ, ଯାହା ସମ୍ପୂର୍ଣ୍ଣ ଭାବରେ ବ୍ୟକ୍ତିନିଷ୍ଠ (subjective) ଓ ବିଶେଷ ପରିମାଣରେ ବ୍ୟକ୍ତି ବିଶେଷର ଭାଷାଗତ ସାମର୍ଥ୍ୟ ଓ ମାନସିକ ଅବସ୍ଥା ଦ୍ୱାରା ପ୍ରଭାବିତ । ଏହା ଏକ ବିଜ୍ଞାନସମ୍ମତ (scientific) ପଦ୍ଧତି ନୁହେଁ । ମନୁଷ୍ୟର ଚେତନାବସ୍ଥା ମଧ୍ୟ ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତିତ ହୁଏ । ସର୍ବଶେଷରେ ପ୍ରାଣୀମାନଙ୍କର ସଚେତନତା ଅନ୍ତର୍ନିରୀକ୍ଷଣ ପଦ୍ଧତି ଦ୍ୱାରା ଅନୁଧ୍ୟାନ କରିହେବ ନାହିଁ । ଏହିସବୁ କାରଣରୁ ଉକ୍ତଙ୍କ ପ୍ରଦତ୍ତ ସଜ୍ଞାଟି ପରବର୍ତ୍ତୀ ମନୋବିଜ୍ଞାନୀମାନଙ୍କ ଦ୍ୱାରା ବିଶେଷ ଆଦୃତ ହେଲନାହିଁ ।

ଓ୍ୱାଟସନ୍ (Watson) ଓ ଅନ୍ୟାନ୍ୟ ବ୍ୟବହାରବାଦୀମାନେ (Behaviourists) ଉକ୍ତଙ୍କ ମତର ବିରୋଧ କଲେ । 'ଚେତନ ମନ'କୁ ଛାଡ଼ି ବ୍ୟବହାରବାଦୀମାନେ ବାହ୍ୟ କାର୍ଯ୍ୟକଳାପ ଉପରେ ଗୁରୁତ୍ୱ ଆରୋପ କଲେ । ମନ ଭିତରେ କ'ଣ ହେଉଛି ଜାଣିବା ସମ୍ଭବ ନୁହେଁ । କେତେବେଳେ ଆମେ ଅନୁଭୂତିକୁ ଠିକ୍ ଭାବରେ ଉପସ୍ଥାପନ କରିପାରୁ ନାହିଁ ତ କେତେବେଳେ ତାକୁ ଅତିରଞ୍ଜିତ କରିଥାଉଁ । ତେଣୁ କେବଳ ଶାରୀରିକ ଆଚରଣକୁ ହିଁ ବିଜ୍ଞାନ ସମ୍ମତ ପଦ୍ଧତି ଦ୍ୱାରା ସମୀକ୍ଷା କରିହେବ । ପିଲସ୍‌ବରି (Pilsbury)ଙ୍କ ମତରେ ମନୋବିଜ୍ଞାନ ମାନବିକ ଆଚରଣ ସମ୍ବନ୍ଧୀୟ ବିଜ୍ଞାନ । କୌଣସି ଏକ ଉଦ୍ଦୀପକ (stimulus) ମନୁଷ୍ୟ ଉପରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରେ ତାହାହିଁ ଆଚରଣ । ଉଦାହରଣ ସ୍ୱରୂପ କୌଣସି ଏକ ବ୍ୟକ୍ତିଙ୍କୁ ଗାଳିଦେଲେ ତାଙ୍କ ମନରେ ରାଗ ଆସେ । ଏଠାରେ ଗାଳି-ଗୁଲଜ ଗୋଟିଏ ଉଦ୍ଦୀପକ ଏବଂ ଏହାର ପ୍ରଭାବରେ ମଣିଷ ମନରେ ରାଗ ଆସେ । ରାଗକୁ କିନ୍ତୁ ଦେଖିହେବ ନାହିଁ କି ପ୍ରତ୍ୟକ୍ଷ ଭାବରେ ଅନୁଧ୍ୟାନ କରିହେବ ନାହିଁ । ରାଗିବା ଫଳରେ ଆଚରଣରେ ଯେଉଁ ପରିବର୍ତ୍ତନ ଦେଖାଯାଏ, ଯଥା ହୃତ୍‌ପିଣ୍ଡର ସ୍ପନ୍ଦନ, ନିଃଶ୍ୱାସ ପ୍ରଶ୍ୱାସର ତୀବ୍ରତା, ଶାରୀରିକ ଅସ୍ଥିରତା ଇତ୍ୟାଦିକୁ ଅନୁଧ୍ୟାନ ବା

ପର୍ଯ୍ୟବେକ୍ଷଣ କରିହେବ । ଏଠାରେ ମାନସିକ ସ୍ଥିତି ଶାରୀରିକ ଆଚରଣ ମାଧ୍ୟମରେ ପରିପ୍ରକାଶ ହେଲା । ଶାରୀରିକ ଆଚରଣକୁ ପର୍ଯ୍ୟବେକ୍ଷଣ କରି ମାନସିକ ସ୍ଥିତି ସମ୍ବନ୍ଧରେ ଅବଧାରଣା କରିହେବ । ବ୍ୟକ୍ତି ବିଶେଷର ମାନସିକ ପ୍ରକ୍ରିୟାର ବାହ୍ୟ-ପର୍ଯ୍ୟବେକ୍ଷଣ କହିଲେ ଆଚରଣକୁ ବୁଝାଏ । ବିଂଶ ଶତାବ୍ଦୀରେ ଉଡ୍‌ୱାର୍ଥ (wood worth) ମନୋବିଜ୍ଞାନକୁ ବ୍ୟକ୍ତିବିଶେଷର ଆଚରଣ ସମ୍ବନ୍ଧୀୟ ଜ୍ଞାନ ବୋଲି ବର୍ଣ୍ଣନା କଲେ ।

ବିଭିନ୍ନ ପ୍ରକାର ପରିସ୍ଥିତିରେ ମନୁଷ୍ୟ ଭିନ୍ନ ଭିନ୍ନ ଧରଣର ଆଚରଣ ପ୍ରଦର୍ଶନ କରିଥାଏ । ଉଦାହରଣସ୍ୱରୂପ ଶ୍ରେଣୀ ଗୃହରେ ଜଣେ ଛାତ୍ରର ଶିକ୍ଷକଙ୍କ ପ୍ରତି ବ୍ୟବହାର ରାସ୍ତାଘାଟରେ ସେ ଶିକ୍ଷକଙ୍କ ପ୍ରତି ଦେଖାଉଥିବା ବ୍ୟବହାର ଠାରୁ ଭିନ୍ନ । ବ୍ୟକ୍ତିଗତ ସ୍ତରରେ ଜଣେ ମଣିଷର ବ୍ୟବହାର ବା ଚାଲିଚଳନ ତାର ସାମାଜିକ ସ୍ତରରେ ପ୍ରଦର୍ଶନ କରୁଥିବା ଆଚରଣ ଠାରୁ ଭିନ୍ନ । ବ୍ୟକ୍ତିବିଶେଷ ତାର ବାହ୍ୟ ପରିବେଷ୍ଟନୀ ସହିତ ସମ୍ପର୍କ ସ୍ଥାପନ କରିବା ଅବସ୍ଥାରେ ଯେଉଁ ଆଚରଣ ଦେଖାଏ, ତାହା ହିଁ ମନୋବିଜ୍ଞାନର ଆଲୋଚ୍ୟ ବିଷୟବସ୍ତୁ, ଆର୍. ଏସ୍. ଉଡ୍‌ୱାର୍ଥଙ୍କ ମତରେ 'ପ୍ରାଣୀ-ମାନଙ୍କର ପରିବେଷ୍ଟନୀ ସମ୍ପର୍କିତ କାର୍ଯ୍ୟାବଳୀର ବିଜ୍ଞାନସମ୍ମତ ଅଧ୍ୟୟନ ହିଁ ମନୋ-ବିଜ୍ଞାନ । (Psychology is the scientific study of the organism in relation to its environment) ଏହି ସଜ୍ଞାରେ ଚାରିଗୋଟି ମୁଖ୍ୟ ବିଷୟ ରହିଛି—(କ) ବିଜ୍ଞାନ, (ଖ) ପ୍ରାଣୀ, (ଗ) କାର୍ଯ୍ୟାବଳୀ ଓ (ଘ) ପରିବେଷ୍ଟନୀ ।

ମନୋବିଜ୍ଞାନ ଏକ ସକାରାତ୍ମ (positive) ବିଜ୍ଞାନ । ବିଜ୍ଞାନ ଘଟଣାବଳୀର କାର୍ଯ୍ୟ-କାରଣ ସମ୍ପର୍କ ସ୍ଥିର କରିବା ପାଇଁ ଉଦ୍ଦିଷ୍ଟ । ମନୋବିଜ୍ଞାନରେ ବ୍ୟକ୍ତି ପ୍ରଦର୍ଶନ କରୁଥିବା ଆଚରଣର କାରଣଗତ ସମୀକ୍ଷା କରାଯାଏ । ମନୋବିଜ୍ଞାନର ବିଷୟବସ୍ତୁକୁ ବିଜ୍ଞାନସମ୍ମତ ପରୀକ୍ଷଣ ଦ୍ୱାରା ଅଧ୍ୟୟନ ଓ ମାପନ କରାଯାଏ । ଅନ୍ୟାନ୍ୟ ବିଜ୍ଞାନ ପରି ବିଭିନ୍ନ ପରୀକ୍ଷା ଓ ବିଶ୍ଳେଷଣ ସାହାଯ୍ୟରେ ପ୍ରାଣୀମାନଙ୍କ ଆଚରଣ ସମ୍ବନ୍ଧୀୟ କେତେ-ଗୁଡ଼ିଏ ସାଧାରଣ ନିୟମ ଉଦ୍ଭାବନ କରିବା ମନୋବିଜ୍ଞାନର ଲକ୍ଷ୍ୟ । ବିଜ୍ଞାନ ନିର୍ଦ୍ଧାରିତ ବିଷୟବସ୍ତୁକୁ ନିରପେକ୍ଷ ଭାବରେ ଅଧ୍ୟୟନ କରେ । ବସ୍ତୁନିଷ୍ଠ ପର୍ଯ୍ୟବେକ୍ଷଣ (objective observation) ବିଜ୍ଞାନର ପ୍ରଧାନ ପଦ୍ଧତି । ମନୋବିଜ୍ଞାନ ପର୍ଯ୍ୟବେକ୍ଷଣ ସାହାଯ୍ୟରେ, ବିଧିବଦ୍ଧ ଓ ଶୃଙ୍ଖଳିତ ଭାବରେ ପ୍ରାଣୀମାନଙ୍କ ଆଚରଣ ସମ୍ବନ୍ଧୀୟ ତଥ୍ୟ

ସଂଗ୍ରହ କରେ । ବାରମ୍ବାର ପରୀକ୍ଷା ପରେ ସଂଗୃହୀତ ତଥ୍ୟଗୁଡ଼ିକ ମନୋବିଜ୍ଞାନର ସାଧାରଣ **ନିୟମ** ଆକାରରେ ପ୍ରକାଶ କରାଯାଏ ।

ଯେ କୌଣସି ବିଜ୍ଞାନର ତିନୋଟି ମୁଖ୍ୟ ଉଦ୍ଦେଶ୍ୟ ଥାଏ—ପରୀକ୍ଷଣ (assessment), ଭବିଷ୍ୟତ ସୂଚନା (Prediction) ଓ ନିୟନ୍ତ୍ରଣ (control), ସପରୀକ୍ଷା (Experiment) ଓ ପର୍ଯ୍ୟବେକ୍ଷଣ ମାଧ୍ୟମରେ ମନୋବିଜ୍ଞାନ ବ୍ୟକ୍ତି ବିଶେଷଙ୍କ ମାନସିକ ଓ ଶାରୀରିକ କାର୍ଯ୍ୟକଳାପର ସମୀକ୍ଷା କରିଥାଏ । ତାଙ୍କର ସାମର୍ଥ୍ୟକୁ ବିଚାରକୁ ନେଇ ଭବିଷ୍ୟତ କାର୍ଯ୍ୟକଳାପ ବିଷୟରେ ସୂଚନା ଦିଏ । ଯଥା—କୌଣସି ଶ୍ରେଣୀ ପରୀକ୍ଷାରେ ଛାତ୍ରମାନେ ରଖିଥିବା ନମ୍ବରକୁ ବିଚାରକୁ ନେଇ ସେମାନେ ଉପର ଶ୍ରେଣୀରେ କେଉଁ ପରିମାଣରେ କୃତକାର୍ଯ୍ୟ ହେବେ, ସେ ବିଷୟରେ ମନୋବିଜ୍ଞାନ ସୂଚନା ଦିଏ । ବ୍ୟକ୍ତି ବିଶେଷର କାର୍ଯ୍ୟକଳାପ ବ୍ୟକ୍ତିଗତ ଓ ସାମାଜିକ ଦୃଷ୍ଟିକୋଣରୁ ବାଞ୍ଛିତ ନହେଲେ ମଧ୍ୟ ତାକୁ ନିୟନ୍ତ୍ରିତ କରିବାର ପନ୍ଥା ନିର୍ଦ୍ଧାରଣ କରେ । ଏଥିପାଇଁ ଶିକ୍ଷା କ୍ଷେତ୍ରରେ, କର୍ମକ୍ଷେତ୍ରରେ, ସାମାଜିକ ସ୍ତରରେ, ଓ ମାନସିକ ଚିକିତ୍ସା କ୍ଷେତ୍ରରେ ମନୋବିଜ୍ଞାନର ଭୂମିକା ଉଲ୍ଲେଖନୀୟ । ଏହିସବୁ ଦୃଷ୍ଟିରୁ ମନୋବିଜ୍ଞାନ ଏକ ସୁବ୍ୟବସ୍ଥିତ ବିଜ୍ଞାନ ।

ମନୋବିଜ୍ଞାନ କେବଳ ଯେ ମନୁଷ୍ୟର ଆଚରଣକୁ ଅଧ୍ୟୟନ କରେ ତାହା ନୁହେଁ, ଏହା ପ୍ରାଣୀମାନଙ୍କର କାର୍ଯ୍ୟାବଳୀକୁ ସମୀକ୍ଷା କରି ସାଧାରଣ ବୈଜ୍ଞାନିକ ନିୟମ ପ୍ରତିପାଦନ କରେ ଯାହାଦ୍ୱାରା ଆଚରଣ ସମ୍ବନ୍ଧୀୟ ପରୀକ୍ଷଣ, ଭବିଷ୍ୟତ ସୂଚନା ଓ ନିୟନ୍ତ୍ରଣ ସହଜସାଧ୍ୟ ହୁଏ । ମୂଷା, ବିଲେଇ, ମାଙ୍କଡ଼ ଇତ୍ୟାଦି ପ୍ରାଣୀମାନଙ୍କର କାର୍ଯ୍ୟକଳାପ, ପରିବେଷ୍ଟନୀ ସହିତ ସେମାନଙ୍କର ଉପଯୋଜନ କ୍ଷମତା ଓ ସେମାନଙ୍କ ଆଚରଣ ଉପରେ ପରିବେଷ୍ଟନୀର ପ୍ରଭାବ ଇତ୍ୟାଦି ଅଧ୍ୟୟନ କରି ମନୋବିଜ୍ଞାନ କେତେଗୁଡ଼ିଏ ମୌଳିକ ଓ ସାଧାରଣ ନିୟମ ପ୍ରତିପାଦନ କରିଛି । ଏହି ନିୟମଗୁଡ଼ିକର ଆଶ୍ରୟ ନେଇ ମନୋବିଜ୍ଞାନ ମନୁଷ୍ୟମାନଙ୍କର ଆଚରଣ ସମ୍ବନ୍ଧରେ ବିଶେଷ ଜ୍ଞାନଲାଭ କରିଅଛି ।

## ମନୋବିଜ୍ଞାନର ପରିସର

ଆଚରଣ ସମସ୍ତ ପ୍ରକାର ମାନସିକ ଓ ଶାରୀରିକ କାର୍ଯ୍ୟାବଳୀକୁ ବୁଝାଏ । ସେହି କାରଣରୁ ମନୋବିଜ୍ଞାନର କ୍ଷେତ୍ର ମଧ୍ୟ ବିସ୍ତୃତ । ମାନସିକ ପ୍ରକ୍ରିୟାର ସମୀକ୍ଷା

ମନୋବିଜ୍ଞାନର ମୁଖ୍ୟ ଆଲୋଚ୍ୟ ବିଷୟବସ୍ତୁ ହେଲେ ହେଁ ସେଗୁଡ଼ିକୁ ପ୍ରତ୍ୟକ୍ଷ ଭାବରେ ଅଧ୍ୟୟନ କରିହେବ ନାହିଁ । ଦୈହିକ ଓ ବାହ୍ୟ ଆଚରଣର ଆଗ୍ରହ ନେଇ କେବଳ ପରୋକ୍ଷ ଭାବରେ ଅଧ୍ୟୟନ କରିହେବ । ବ୍ୟକ୍ତି ବିଶେଷଙ୍କ ବାହ୍ୟ ଆଚରଣରୁ ତାଙ୍କର ମାନସିକ ପ୍ରକ୍ରିୟା ବିଷୟରେ ସୂଚନା ମିଳେ । ପୁଣି ମାନସିକ ପ୍ରକ୍ରିୟା କେବଳ ମସ୍ତିଷ୍କ ମଧ୍ୟରେ ସୀମାବଦ୍ଧ ନୁହେଁ । ଏହା ସମସ୍ତ ପ୍ରକାର ଶାରୀରିକ ପ୍ରକ୍ରିୟାର ସମନ୍ୱିତ ଫଳ । ତେଣୁ ଶରୀରତତ୍ତ୍ୱ ସମ୍ବନ୍ଧୀୟ ବିଷୟବସ୍ତୁ ଯଥା—ସ୍ନାୟୁମଣ୍ଡଳ, ମାଂସପେଶୀ, ଇନ୍ଦ୍ରିୟଗୁଡ଼ିକର କାର୍ଯ୍ୟକାରିତା ଅନ୍ତଃସ୍ରାବୀ ଗ୍ରନ୍ଥିର internal glands) ଗଠନ ଓ କାର୍ଯ୍ୟ ଆଦି ଶାରୀରିକ କାର୍ଯ୍ୟାବଳୀ ସମୀକ୍ଷା କରିବା ମନୋବିଜ୍ଞାନର ପରିସର ଅନ୍ତର୍ଭୁକ୍ତ ।

ସମ୍ବେଦନ (sensation), ସ୍ମରଣ (memory), ପ୍ରତ୍ୟକ୍ଷପ୍ରକ୍ରିୟା (perception), ଶିକ୍ଷଣ (learning), ଚିନ୍ତନ (thinking), ଆବେଗ (emotion), ଅଭିପ୍ରେରଣ (motivation) ଇତ୍ୟାଦି ମାନସିକ ପ୍ରକ୍ରିୟା ସମ୍ବନ୍ଧୀୟ ତଥ୍ୟ ଓ ନିୟମ ମନୋବିଜ୍ଞାନରେ ଆଲୋଚନା କରାଯାଇଥାଏ । ମନୁଷ୍ୟ ପରିବେଷ୍ଟନୀ ସହିତ ନିଜକୁ ଖାପ ଖୁଆଇ ଚଳିବା ପାଇଁ ଯେଉଁ ଆଚରଣ ଦେଖାଏ, ତାହା ତାର ଜ୍ଞାନ, ଆବେଗ ଓ ଅଭିପ୍ରେରଣା ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ପରିବେଷ୍ଟନୀ ସହିତ ଉପଯୋଜନ କ୍ଷମ ହେବାପାଇଁ ବୁଦ୍ଧି, ବିଚାର ଓ ଜ୍ଞାନର ଆବଶ୍ୟକତା ରହିଛି । ଯେତେ ବିଚାରକ୍ଷମ ଓ ବୁଦ୍ଧିଯୁକ୍ତ ହେଲେ ମଧ୍ୟ ମନୁଷ୍ୟ ଓ ପ୍ରାଣୀ ମାନେ ଭାବପ୍ରବଣ । ଦୈନନ୍ଦିନ ଜୀବନର ଘଟଣାବଳୀ ଭିନ୍ନ ଭିନ୍ନ ଆବେଗ ଦ୍ୱାରା ପ୍ରଭାବିତ ହୋଇଥାଏ । ଯେ କୌଣସି ଲକ୍ଷ୍ୟ ହାସଲ ପାଇଁ ଇଚ୍ଛା ଥିବା ଦରକାର । ଲକ୍ଷ୍ୟାଭିମୁଖୀ ମାନସିକ ଆଚରଣକୁ ଅଭିପ୍ରେରଣା କୁହାଯାଏ । ମନୋବିଜ୍ଞାନ ପ୍ରାଣୀମାନଙ୍କର ଜ୍ଞାନାତ୍ମକ, ଭାବାତ୍ମକ ଓ ଅଭିପ୍ରେରଣାତ୍ମକ ବିଭାଗଗୁଡ଼ିକର ଅନୁଶୀଳନ ଓ ବିଶ୍ଳେଷଣ କରେ । ଉଦାହରଣସ୍ୱରୂପ ବିଦ୍ୟାଳୟରେ ବାର୍ଷିକ ପରୀକ୍ଷାରେ ସଫଳତା ହାସଲ କରିବା ପାଇଁ ପିଲାର ବିଷୟବସ୍ତୁ ସମ୍ବନ୍ଧୀୟ ଜ୍ଞାନ ଅର୍ଜନ କରିବା ଆବଶ୍ୟକ । ଏହା ବ୍ୟକ୍ତି ବିଶେଷର ଜ୍ଞାନାତ୍ମକ ବିଭାଗ । ଜ୍ଞାନ ଆହରଣ କରିବା ପାଇଁ ତାର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଆଗ୍ରହ ଥିବା ଆବଶ୍ୟକ ଓ ଏହି ଲକ୍ଷ୍ୟ ହାସଲ କରିବା ପାଇଁ ସେ ଏକ ନିର୍ଦ୍ଦିଷ୍ଟ କର୍ମପନ୍ଥା ଅବଲମ୍ବନ କରିବା ଉଚିତ । ଏହା ତାର ଅଭିପ୍ରେରଣାତ୍ମକ ବିଭାଗ ବିଷୟରେ ସୂଚନା ଦିଏ । ଯେତେ ଜ୍ଞାନ ଆହରଣ କଲେ ମଧ୍ୟ ଓ ତାର କର୍ମପନ୍ଥା ଯେତେ ଲକ୍ଷ୍ୟାଭିମୁଖୀ ହୋଇଥିଲେ ମଧ୍ୟ ପରୀକ୍ଷାରେ ଆଶାନୁରୂପ ସଫଳତା

ହାସଲ କରିବା ପାଇଁ ଉତ୍କଣ୍ଠା, ଉତ୍ତେଜନା ଓ ଭାବାବେଗ ତଥା ଭାବପ୍ରବଣତାକୁ ଏକ ନିର୍ଦ୍ଦିଷ୍ଟ ସ୍ତରରେ ନିୟନ୍ତ୍ରିତ କରିବାପାଇଁ ତାର ଆବଶ୍ୟକୀୟ ଶକ୍ତି ଥିବା ଦରକାର । ଏହା ତାର ଭାବାତ୍ମକ ବିଭାଗ । ଅର୍ଥାତ୍ ବ୍ୟକ୍ତିବିଶେଷ ଯେ କୌଣସି ଆଚରଣ ପ୍ରଦର୍ଶନ କରେ ତାହା ତା'ର ଜ୍ଞାନ, ଭାବାବେଗ ଓ ଅଭିପ୍ରେରଣା ଦ୍ୱାରା ପ୍ରଭାବିତ ହୁଏ । ଏହି ତିନୋଟି ଦିଗକୁ ବିଚାରକୁ ନେଇ ମନୋବିଜ୍ଞାନ ବ୍ୟକ୍ତିବିଶେଷର ଆଚରଣକୁ ଅନୁଧ୍ୟାନ କରେ ।

ମନୁଷ୍ୟର ବୁଦ୍ଧି, ବ୍ୟକ୍ତିତ୍ୱ, ସୃଜନଶୀଳତା (creativity) ଓ ତାହାକୁ ଅନୁଶୀଳନ କରିବାର ବିଭିନ୍ନ ପଦ୍ଧତି, ତାର ଜନ୍ମଗତ ପ୍ରକୃତି ଓ ତାର ବିକାଶ, ପାରିପାର୍ଶ୍ୱିକ ଅବସ୍ଥାର ମାନସିକ କ୍ରିୟା ଉପରେ ପ୍ରଭାବ ଇତ୍ୟାଦି ମନୋବିଜ୍ଞାନ ଗବେଷଣାର ବିଷୟ । ମାନସିକ ପ୍ରକ୍ରିୟା, ଆଚରଣ ଓ ପରିବେଷ୍ଟନୀ ସହିତ ଉପଯୋଜନ (adaptation) କ୍ଷମତାକୁ ସମ୍ପୂର୍ଣ୍ଣ ଭାବରେ ହୃଦୟଙ୍ଗମ କରିବା ନିମନ୍ତେ ଆବଶ୍ୟକ ହେଉଥିବା ସମସ୍ତ ସମସ୍ୟାକୁ ସମୀକ୍ଷା କରିବା ମନୋବିଜ୍ଞାନର ପରିସରଭୁକ୍ତ ।

ସମାଜର ବିଭିନ୍ନ କ୍ଷେତ୍ରରେ ମନୋବିଜ୍ଞାନର ଉପାଦେୟତା ରହିଛି । ଗତ ୫୦ ବର୍ଷ ମଧ୍ୟରେ ଅନ୍ୟାନ୍ୟ ବିଜ୍ଞାନ ପରି ମନୋବିଜ୍ଞାନ ଅତି ଦ୍ରୁତଗତିରେ ବିକାଶ ଲାଭ କରିଛି । ଏହାର କ୍ଷେତ୍ର ଅତ୍ୟନ୍ତ ବିସ୍ତୃତ ହୋଇଯିବାରୁ ଏହାର ବିଭିନ୍ନ ବିଭାଗ ମୂଳଖଣ୍ଡରୁ କ୍ରମେ ନିଜକୁ ସ୍ୱତନ୍ତ୍ର କରି ଅନେକ ସ୍ଥଳରେ ପ୍ରତିଷ୍ଠିତ ହୋଇଛନ୍ତି । ଏହି ବିଭାଗଗୁଡ଼ିକ ବିଶ୍ଳେଷଣ କଲେ ଜାଣିହେବ ଯେ ମନୋବିଜ୍ଞାନର ପରିସର କେତେ ବ୍ୟାପକ ଅଟେ ।

## ମନୋବିଜ୍ଞାନର ବିଭିନ୍ନ ଶାଖା

୧ । ପରୀକ୍ଷାମୂଳକ ମନୋବିଜ୍ଞାନ (Experimental Psychology) —ଏଥିରେ ମନୁଷ୍ୟ ଓ ପ୍ରାଣୀମାନଙ୍କର ମାନସିକ ପ୍ରକ୍ରିୟା, ଯଥା—ପ୍ରତ୍ୟକ୍ଷ, ସ୍ମରଣ, ଚିନ୍ତନ, ଶିକ୍ଷଣ ଇତ୍ୟାଦି ଅଧ୍ୟୟନ କରାଯାଇ ସେ ସମ୍ପର୍କରେ ମୌଳିକ ଓ ସାଧାରଣ ନିୟମ ନିର୍ଦ୍ଧାରଣ କରାଯାଇଥାଏ । ଏହାକୁ ମନୋବିଜ୍ଞାନର ଗୋଟିଏ ଶାଖା ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ, କାରଣ ଏଥିରୁ ନିର୍ଦ୍ଧାରିତ ହେଉଥିବା ନିୟମାବଳୀ ଶିକ୍ଷା, ସମାଜ, ଶିଳ୍ପ ଇତ୍ୟାଦି ଅନେକ କ୍ଷେତ୍ରରେ ପ୍ରୟୋଗ କରାଯାଇଥାଏ ।

୨। ବିକାଶମୂଳକ ମନୋବିଜ୍ଞାନ (Developmental Psychology)—ଶୈଶବରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ମନୁଷ୍ୟର ଆଚରଣରେ ଘଟୁଥିବା ବିକାଶକୁ ଆଲୋଚନା କରିବା ଏହାର ଲକ୍ଷ୍ୟ। ଶିଶୁ ମନୋବିଜ୍ଞାନ (Child Psychology) ଏହାର ଏକ ଅଂଶ। ଶିଶୁ ମନୋବିଜ୍ଞାନରେ ଶିଶୁ କିପରି ଭିନ୍ନ ଭିନ୍ନ ଆଚରଣ ଓ ଦକ୍ଷତା ଶିକ୍ଷା କରେ, ପରିବାର ଓ ପରିବେଶ ଶିଶୁର ଆଚରଣକୁ କିପରି ପ୍ରଭାବିତ କରନ୍ତି, ଶିଶୁ ଓ ପ୍ରାପ୍ତ ବୟସ୍କ ବ୍ୟକ୍ତିଙ୍କ ଆଚରଣରେ କେଉଁପ୍ରକାର ତାରତମ୍ୟ ରହିଛି ଇତ୍ୟାଦି ସମସ୍ୟା ସମ୍ବନ୍ଧୀୟ ତଥ୍ୟ ଅନୁଶୀଳନ କରାଯାଏ।

୩। ଅସ୍ୱାଭାବିକ ମନୋବିଜ୍ଞାନ (Abnormal Psychology)—ଏଥିରେ ବିକୃତ ସମ୍ପନ୍ନ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଅଧ୍ୟୟନ କରାଯାଏ। ମନୁଷ୍ୟ ମନର ଅପ୍ରାକୃତିକ ଅବସ୍ଥା ଓ ତଦ୍‌ଜନିତ ବିଭିନ୍ନ ମାନସିକ ବ୍ୟାଧି ସମ୍ପର୍କରେ ଅନୁଧ୍ୟାନ କରାଯାଏ। କେଉଁ କାରଣରୁ ମଣିଷ ମାନସିକ ବ୍ୟାଧିର ଶିକାର ହୁଏ; ମାନସିକ ବିକୃତ ଥିବା ବ୍ୟକ୍ତି କିପରି ବ୍ୟବହାର କରେ, ବିକୃତି କିପରି ଦୂର କରାଯାଇପାରିବ ଇତ୍ୟାଦି ଏହାର ଆଲୋଚ୍ୟ ବିଷୟବସ୍ତୁ।

୪। ସାମାଜିକ ମନୋବିଜ୍ଞାନ (Social Psychology)—ଏହା ସାହାଯ୍ୟରେ ବ୍ୟକ୍ତି ବିଶେଷର ସାମାଜିକ ଆଚରଣ ବିଶ୍ଳେଷଣ କରାଯାଏ। ସମାଜ-ତତ୍ତ୍ୱ (sociology ସମାଜର ଗଠନ ଓ କାର୍ଯ୍ୟକୁ ସମୀକ୍ଷା କରିଥାଏ; କିନ୍ତୁ ସାମାଜିକ ମନୋବିଜ୍ଞାନରେ ସମାଜରେ ବିଭିନ୍ନ ସଂଘର ଗଠନ ଓ କାର୍ଯ୍ୟକୁ ଆଲୋଚନା କରିବା ସଙ୍ଗେ ସଙ୍ଗେ ବ୍ୟକ୍ତିବିଶେଷ ଉପରେ ଏହାର ପ୍ରଭାବ ବିଷଦ ଭାବେ ଆଲୋଚନା କରାଯାଏ। ଏହା ଉଭୟ ସାମାଜିକ ଓ ଅସାମାଜିକ କାର୍ଯ୍ୟକଳାପର କାରଣ, ସମସ୍ୟା ଓ ସମସ୍ୟା ଦୂରୀକରଣ ପନ୍ଥା ବିଷୟରେ ଆଲୋଚନା କରେ।

୫। ଶିଳ୍ପ ମନୋବିଜ୍ଞାନ (Industrial Psychology)—ଏଥିରେ ଶିଳ୍ପ ପ୍ରତିଷ୍ଠାନରେ ବିଭିନ୍ନ ଧରଣର ଦଳଗତ ଓ ବ୍ୟକ୍ତିକେନ୍ଦ୍ରିକ ସମସ୍ୟା ସମ୍ବନ୍ଧୀୟ ଅଧ୍ୟୟନ କରାଯାଏ। ଶିଳ୍ପ ପ୍ରତିଷ୍ଠାନର ପରିବେଶ, ଶ୍ରମିକମାନଙ୍କ କାର୍ଯ୍ୟଦକ୍ଷତା ଉପରେ ତାହାର ପ୍ରଭାବ, ଆକସ୍ମିକ ଦୁର୍ଘଟଣାର କାରଣ ଓ

ନିରାକରଣ, ଉତ୍ପାଦନ ବୃଦ୍ଧି ନିମନ୍ତେ ଯୋଜନା, ଶ୍ରମିକମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ, ନିଯୁକ୍ତି ପ୍ରଣାଳୀ, ବୃତ୍ତିଗତ ସମସ୍ୟା ଇତ୍ୟାଦି ଶିଳ୍ପ ମନୋବିଜ୍ଞାନର ବିଷୟବସ୍ତୁ ।

୬ । ଶିକ୍ଷା ମନୋବିଜ୍ଞାନ (Educational Psychology)—ଏହା ସାହାଯ୍ୟରେ ଶିକ୍ଷା କ୍ଷେତ୍ରରେ ଦେଖାଯାଉଥିବା ବିଭିନ୍ନ ସମସ୍ୟା ମନୋ-ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରାଯାଏ । ଶିକ୍ଷକ ଓ ଛାତ୍ରର ସମ୍ପର୍କ, ଶିକ୍ଷାଦାନ ପ୍ରଣାଳୀ, ପାଠ୍ୟସୂଚୀ ଓ ପାଠ୍ୟକ୍ରମ, ଶିକ୍ଷା ପ୍ରତି ଛାତ୍ରର ଆଗ୍ରହ ସୃଷ୍ଟି କରିବା, ଶିକ୍ଷାର୍ଥୀର ସାମର୍ଥ୍ୟ ପରୀକ୍ଷଣ ଇତ୍ୟାଦି ବିଷୟବସ୍ତୁ ଏହାର ପରିସରଭୁକ୍ତ ।

ଉପରେ ଦିଆଯାଇଥିବା ବିଭାଗ ବ୍ୟତୀତ ମନୋବିଜ୍ଞାନର ଆହୁରି ଅନେକ ଶାଖା ରହିଛି ।

## ଶିଶୁ ମନୋବିଜ୍ଞାନ
## (Child Psychology)

ଶିଶୁ ମନୋବିଜ୍ଞାନ ବିକାଶ ମୂଳକ ମନୋବିଜ୍ଞାନର ଏକ ପ୍ରଧାନ ଅଂଶ । ଗର୍ଭସଞ୍ଚାର ଠାରୁ ପ୍ରାପ୍ତ ବୟସ୍କ ହେବା ପର୍ଯ୍ୟନ୍ତ ଶିଶୁର ବୃଦ୍ଧି, ବ୍ୟକ୍ତିତ୍ୱ, ଭାଷା, ସୃଜନ-ଶୀଳତା, ଚିନ୍ତନ, ଆବେଗ, ସ୍ମରଣ ଶକ୍ତି ପ୍ରଭୃତି ବିଭିନ୍ନ ମାନସିକ ପ୍ରକ୍ରିୟାର ବିକାଶ ଅନୁଧ୍ୟାନ କରିବା ଶିଶୁ ମନୋବିଜ୍ଞାନର ପ୍ରଧାନ ଲକ୍ଷ୍ୟ ଅଟେ । ଏହି ପ୍ରକ୍ରିୟା ମାଧ୍ୟମରେ ଶିଶୁ ତାର ପରିବେଷ୍ଟନୀକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରେ ।

ଶିଶୁର ବିଭିନ୍ନ ପ୍ରକାର ଭାବାତ୍ମକ ଓ ଜ୍ଞାନାତ୍ମକ ବିକାଶ ନିମନ୍ତେ ନିୟମ ପ୍ରଣୟନ କରି ତାର ଆଚରଣକୁ ନିୟନ୍ତ୍ରଣ ଓ ପରିବର୍ତ୍ତନ କରିବା ଶିଶୁ ମନୋବିଜ୍ଞାନ ଅଧ୍ୟୟନର ଅନ୍ୟ ଏକ ଲକ୍ଷ୍ୟ । ଆଚରଣ ନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ଏହି ନିୟମଗୁଡ଼ିକୁ ଆଧାର କରି ଶିଶୁମାନଙ୍କର ଉପଯୁକ୍ତ ସାମାଜିକ ଓ ବ୍ୟକ୍ତିଗତ ବିକାଶ ନିମନ୍ତେ ଶିଶୁ ମନବିଜ୍ଞାନରେ ଉପଦେଶମାନ ଦିଆଯାଏ । ଏହା ବ୍ୟତୀତ ଅସ୍ୱାଭାବିକ,

ଅସାମାଜିକ, ବିକୃତ ସ୍ୱଭାବ, ଶାରୀରିକ ଓ ମାନସିକ ବିକଳାଙ୍ଗ, ପ୍ରତିଭାସମ୍ପନ୍ନ ଓ ବିଶିଷ୍ଟ ଗୁଣ ସମ୍ପନ୍ନ ଶିଶୁମାନଙ୍କର ଆଚରଣ ଓ କ୍ରିୟାକଳାପ ଅଧ୍ୟୟନ ଶିଶୁ ମନୋବିଜ୍ଞାନର ପରିସର ଅନ୍ତର୍ଭୁକ୍ତ । ସାଧାରଣ ଶିଶୁର ବିକାଶଧାରାକୁ ଆଖିଆଗରେ ରଖି କେତେବେଳେ ଓ କେଉଁ କାରଣ ଯୋଗୁଁ ଅନ୍ୟ ଶିଶୁର ବିକାଶରେ ବ୍ୟତିକ୍ରମ ହୁଏ ତାହା ଶିଶୁ ମନୋବିଜ୍ଞାନ ସମୀକ୍ଷା କରେ । ପିତାମାତା, ଗୁରୁଜନ, ସାଙ୍ଗସାଥୀ, ଗୃହ ଓ ବିଦ୍ୟାଳୟସ୍ଥ ପରିବେଶ ଦ୍ୱାରା ଶିଶୁର ଶାରୀରିକ ଓ ବୌଦ୍ଧିକ ବିକାଶ କିପରି ପ୍ରଭାବିତ ହୁଏ, ତାହା ଶିଶୁ ମନୋବୈଜ୍ଞାନିକମାନେ ବିଶ୍ଳେଷଣ କରନ୍ତି ।

## ଶିଶୁ ମନୋବିଜ୍ଞାନ ଅଧ୍ୟୟନର ଆବଶ୍ୟକତା

ଅଧ୍ୟୟନର ସୁବିଧା ଦୃଷ୍ଟିରୁ ବିକାଶ ଅବସ୍ଥାକୁ ବିଭିନ୍ନ ପର୍ଯ୍ୟାୟଭୁକ୍ତ କରାଯାଇଛି । ଜନ୍ମଠାରୁ ପ୍ରାପ୍ତ ବୟସ୍କ ହେବା ପର୍ଯ୍ୟନ୍ତ ଅବସ୍ଥାକୁ ମୁଖ୍ୟତଃ ୩ଟି ଭାଗରେ ବିଭକ୍ତ କରାଯାଇଛି । ୧) ଶୈଶବ (ଜନ୍ମଠାରୁ ୬ ବର୍ଷ ୨) ବାଲ୍ୟାବସ୍ଥା (୬ ବର୍ଷରୁ ୧୨ ବର୍ଷ) ଓ (୩) କୈଶୋରାବସ୍ଥା (୧୨ ବର୍ଷରୁ ୧୭ ବର୍ଷ) ।

ଶୈଶବ ଓ ବାଲ୍ୟାବସ୍ଥାରେ ମାନସିକ ବିକାଶ ଅତି ଦ୍ରୁତଗତିରେ ହୋଇଥାଏ । କେତେକ ମନୋବିଜ୍ଞାନୀଙ୍କ ମତରେ ସାଧାରଣତଃ ୧୮ ବର୍ଷ ପର୍ଯ୍ୟନ୍ତ ବ୍ୟକ୍ତିର ଯେତେ ପରିମାଣରେ ମାନସିକ ଶକ୍ତିର ବିକାଶ ହୁଏ ତାର ପ୍ରାୟ ଅଧାଅଧି ୬ ବର୍ଷ ମଧ୍ୟରେ ଶିଶୁ ହାସଲ କରିନେଇଥାଏ । ଏହି କାରଣରୁ ଶିଶୁର ଯତ୍ନ ନେବା ଓ ତା ପାଇଁ ଏକ ଉପଯୁକ୍ତ ପରିବେଷ୍ଟନୀ ସୃଷ୍ଟି କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଶିଶୁମାନଙ୍କୁ ଶିକ୍ଷା ଦେବା କ୍ଷେତ୍ରରେ ଶିଶୁ ମନୋବିଜ୍ଞାନର ଯଥେଷ୍ଟ ଉପାଦେୟତା ରହିଛି । ଶିଶୁ ମନୋବିଜ୍ଞାନ ଅଧ୍ୟୟନ କଲେ ବ୍ୟକ୍ତିଗତ ଭିନ୍ନତା ଜାଣିହେବ । ପ୍ରତ୍ୟେକ ଶିଶୁର ବୁଦ୍ଧି, ବ୍ୟକ୍ତିତ୍ୱ, ସୃଜନଶୀଳତା ଓ ତାର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ସମ୍ବନ୍ଧରେ ଧାରଣା କରି ହେଲେ, ତାର ବ୍ୟକ୍ତିଗତ ଗୁଣାବଳୀର ବିକାଶ ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିହେବ । ପରିବେଷ୍ଟନୀ ସହିତ ଖାପ ଖୁଆଇ ଚାଲିବା ପାଇଁ ତାର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟକୁ ଆଖି ଆଗରେ ରଖି ତାକୁ କିଛି ଉପଦେଶ ବା ନିର୍ଦ୍ଦେଶ ଦେଇ ହେବ । ବିଭିନ୍ନ ପରିସ୍ଥିତିରେ ତାର ଆଚରଣକୁ ପର୍ଯ୍ୟବେକ୍ଷଣ କରି ତାର ବ୍ୟକ୍ତିତ୍ୱ ଓ ମାନସିକ ଶକ୍ତି ସମ୍ବନ୍ଧରେ ଭବିଷ୍ୟତ ସୂଚନା ଦେଇ ହେବ । ଯଦି

ତାର ଆଚରଣ ସାମାଜିକ ଦୃଷ୍ଟିକୋଣରୁ ବାଞ୍ଛିତ ନ ହୁଏ, ତେବେ ତାକୁ ମନୋ-ବୈଜ୍ଞାନିକ ପ୍ରଣାଳୀରେ ନିୟନ୍ତ୍ରିତ କରାଯାଇପାରିବ ।

ଶିଶୁପ୍ରତି ପିତାମାତା ଓ ଶିକ୍ଷକଙ୍କର ଯଥେଷ୍ଟ ଦାୟିତ୍ୱ ରହିଛି । ସେମାନଙ୍କର ମନୋବିଜ୍ଞାନ ସମ୍ବନ୍ଧରେ ଆବଶ୍ୟକୀୟ ଜ୍ଞାନ ରହିବା ଆବଶ୍ୟକ । ଏହା ଫଳରେ ସେମାନେ ଶିଶୁର ଅନ୍ତର୍ନିହିତ ଶକ୍ତି ଓ ଯୋଗ୍ୟତାର ବିକାଶ ପାଇଁ ତାକୁ ଉପଯୁକ୍ତ ମାର୍ଗ ଦେଖାଇପାରିବେ । ଶିଶୁର ଶାରୀରିକ ଓ ମାନସିକ ବିକାଶ ପାଇଁ ବିଭିନ୍ନ ସ୍ତର ରହିଛି । କୌଣସି ଶିଶୁର ମାନସିକ ବିକାଶରେ ବ୍ୟତିକ୍ରମ ଘଟିଲେ ପିତା ମାତା ଓ ଓ ଶିକ୍ଷକ ଉପଯୁକ୍ତ ପଦକ୍ଷେପ ନେଇ ପାରିବେ । ଉଦାହରଣ ସ୍ୱରୂପ ଦେଢ଼ ବର୍ଷରେ ଯଦି ଶିଶୁର ଦାନ୍ତ ନ ଉଠେ, ଅଠର ମାସରେ ଯଦି ସେ ନ ଚାଲେ, ୩-୪ ବର୍ଷ ପର୍ଯ୍ୟନ୍ତ ଯଦି ସେ କଥା କହିପାରେ ନାହିଁ, ୬-୭ ବର୍ଷ ବୟସରେ ଯଦି ସେ ଲେଖିପାରେ ନାହିଁ, ୧୦-୧୨ ବର୍ଷ ବୟସରେ ଯଦି ତାଂର ଭାଷାରେ ଅତ୍ୟଧିକ ଦୋଷ ତ୍ରୁଟି ଲକ୍ଷ୍ୟ କରାଯାଏ, ତେବେ ତାର ବିକାଶରେ ବ୍ୟତିକ୍ରମ ଦେଖାଯାଉଛି ବୋଲି ବୁଝିବାକୁ ହେବ । ପିତାମାତା ଏକଥା ଜାଣିଥିଲେ ଶିଶୁମାନଙ୍କର ବିକାଶ ପାଇଁ ଆବଶ୍ୟକୀୟ ପଦକ୍ଷେପ ନେଇପାରିବେ ।

କେଉଁ ସମୟରେ ଶିଶୁ କଣ କରିପାରିବ ଜାଣିପାରିଲେ ତାକୁ ସେହି ଅନୁସାରେ ଶିକ୍ଷା ଦିଆଯାଇ ପାରିବ । ଏହା ଫଳରେ ଶିକ୍ଷା ପ୍ରତି ତାର ଆଗ୍ରହ ବଢ଼ିବ । ଯେଉଁ କାର୍ଯ୍ୟ କରିବା ପାଇଁ ତାର ମାନସିକ ବା ଶାରୀରିକ ପ୍ରସ୍ତୁତ ନାହିଁ । ତାକୁ ସେହି କାର୍ଯ୍ୟ କରିବା ପାଇଁ ଉତ୍ସାହିତ କରାଗଲେ ବା ବାଧ୍ୟ କରାଗଲେ ଶିଶୁର ଆଗ୍ରହ କମିଯିବ । କାର୍ଯ୍ୟଟି ଠିକ୍ ଭାବେ ନକରି ପାରିଲେ ସେ ହତାଶ ହୋଇଯିବ ଓ ତାର ଆତ୍ମବିଶ୍ୱାସ କମିଯିବ । ଏହା ସମ୍ପୂର୍ଣ୍ଣଭାବରେ ଶିଶୁ ପାଇଁ କ୍ଷତି କାରକ । କେତେକ ପିତାମାତା ଅତି ଯତ୍ନବାନ ହୋଇ ୨-୩ ବର୍ଷରୁ ପିଲାଙ୍କୁ ପାଠ ପଢ଼ାନ୍ତି, ୪-୫ ବର୍ଷ ହେଲାବେଳକୁ ତାକୁ ମିଶାଣ, ଗୁଣନ ଇତ୍ୟାଦି ଗାଣିତିକ ସୂତ୍ର ଶିଖାନ୍ତି ଓ ପଣିକିଆ ମୁଖସ୍ଥ କରିବା ପାଇଁ ଉତ୍ସାହିତ କରନ୍ତି । ଏହା ଫଳରେ ଶିଶୁର ପାଠ ପଢ଼ା ପ୍ରତି ଆଗ୍ରହ କମିଯାଏ । ତାର ଦକ୍ଷତା ବାହାରେ ଥିବା କୌଣସି କାର୍ଯ୍ୟ କରିବାକୁ କହିଲେ ଶିଶୁ, ପିତାମାତା ଓ ଶିକ୍ଷକଙ୍କ ଡରରେ ସେ କାମ କରିବା ପାଇଁ ଚେଷ୍ଟା କରେ କିନ୍ତୁ କାର୍ଯ୍ୟ ପ୍ରତି ତାର ଆଗ୍ରହ କମିଯାଏ ଓ ଗୁରୁଜନ ଓ ଶିକ୍ଷକଙ୍କ ପ୍ରତି ଏକପ୍ରକାର ମାନସିକ ପ୍ରତିକ୍ରିୟା ସୃଷ୍ଟି ହୁଏ । କାର୍ଯ୍ୟ କରିବା ପାଇଁ ବାଧ୍ୟକରି ତାକୁ ଦଣ୍ଡ ଦେଲେ ତାର ଭୟ ସୃଷ୍ଟି ହୁଏ ଓ ଆତ୍ମବିଶ୍ୱାସ କମିଯାଏ, ସେ ପିତାମାତା ଓ

ଶିକ୍ଷକଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟା କରେ । ଏହିଭଳି ପରିସ୍ଥିତିରେ ତାର ବିକାଶ ବାଧାପ୍ରାପ୍ତ ହୁଏ । ବଡ଼ ହେଲେ ସେ ଅମାନିଆ ହୁଏ ଏବଂ ଅସାମାଜିକ ଓ ଅସଂଯତ ଆଚରଣ ଦେଖାଏ । ଶିଶୁ ମନୋବିଜ୍ଞାନର ଉଦ୍ଦେଶ୍ୟ ହେଲା ଯେ ଶିଶୁକୁ କୌଣସି କାର୍ଯ୍ୟ କରିବା ପାଇଁ ବାଧ୍ୟ ନକରି, ସେ କିପରି ନିଜ ଇଚ୍ଛାରେ କାମଟି କରିବ, ସେଥିପାଇଁ ତା ମନରେ ଆଗ୍ରହ ଓ କୌତୂହଳ ସୃଷ୍ଟି କରିବା । ଶିଶୁ ମନୋ-ବିଜ୍ଞାନ ଅଧ୍ୟୟନ କଲେ ପିତାମାତା ଓ ଶିକ୍ଷକମାନେ ଏ ସମ୍ବନ୍ଧରେ ଆବଶ୍ୟକୀୟ ଜ୍ଞାନ ଆହରଣ କରିପାରିବେ ।

କେଉଁ ଶିଶୁର କେଉଁ କାର୍ଯ୍ୟ କରିବା ପାଇଁ ଆଗ୍ରହ ଅଛି, ତାହା ପିତାମାତା ଓ ଶିକ୍ଷକ ଅନୁସନ୍ଧାନ କରିବା ଉଚିତ । କାହାର ସଙ୍ଗୀତ ପାଇଁ ଆଗ୍ରହ ତ କାହାର ବିଜ୍ଞାନ ପାଇଁ ଆଗ୍ରହ ଓ ଆଉ କାହାର ଗଳ୍ପ ବା ଗୀତ ଲେଖିବା ପାଇଁ ଇଚ୍ଛା । ବ୍ୟକ୍ତିଗତ ସ୍ୱତନ୍ତ୍ରତାକୁ ବିଚାରକୁ ନେଇ ପିତାମାତା ଓ ଶିକ୍ଷକ ଶିଶୁକୁ ଉପଯୁକ୍ତ କାର୍ଯ୍ୟରେ ଉତ୍ସାହିତ କରିବା ଉଚିତ । ଏହା ଫଳରେ ତାର ଅନ୍ତର୍ନିହିତ ଶକ୍ତିର ବିକାଶ ହୁଏ । ଶିଶୁର ଆଚରଣ ଅସ୍ୱାଭାବିକ ଦେଖାଗଲେ, ତାର କାରଣ ଅନୁସନ୍ଧାନ କରି ଉପଯୁକ୍ତ ଚିକିତ୍ସା କରିବା ଉଚିତ । ଅସାମାଜିକ ବା ଅସ୍ୱାଭାବିକ ବ୍ୟବହାରର କାରଣ ନ ଜାଣି ଶିଶୁକୁ ଅଯଥା ଦଣ୍ଡ ଦେଲେ ତାହା ଶିଶୁ ପକ୍ଷେ ଅଧିକ କ୍ଷତିକାରକ ହୁଏ । ଶିଶୁ ମନୋବିଜ୍ଞାନ ଅଧ୍ୟୟନ କଲେ । ପିତାମାତା ଓ ଶିକ୍ଷକଙ୍କର ଶିଶୁପାଇଁ କର୍ତ୍ତବ୍ୟ କେତେ ଗୁରୁତ୍ୱପୂର୍ଣ୍ଣ ତାହା ସହଜରେ ଜାଣିହେବ । ଶିଶୁର ଶାରୀରିକ ଓ ମାନସିକ ଶକ୍ତିକୁ ନିୟନ୍ତ୍ରିତ କରି ଉପଯୁକ୍ତ ମାର୍ଗରେ ପରିଚାଳିତ କରିବା ପାଇଁ ଶିଶୁ ମନୋବିଜ୍ଞାନ ପିତାମାତା ଓ ଶିକ୍ଷକଙ୍କୁ ଯଥେଷ୍ଟ ସୂଚନା ଦେଇଥାଏ ।

## ଶିଶୁ-ଅଧ୍ୟୟନ ପଦ୍ଧତି (Methods of Child Study)

ଶିଶୁମାନଙ୍କର ବ୍ୟବହାର ତଥା ଆଚରଣ ଅଧ୍ୟୟନ ପାଇଁ କେତେଗୁଡ଼ିଏ ପଦ୍ଧତିର ଆଶ୍ରୟ ନିଆଯାଇଛି । ପ୍ରାଚୀନ କାଳରେ ଦାର୍ଶନିକମାନେ ନିଜର ଅଭିଜ୍ଞତା ଓ ମନୋଭାବକୁ ଭିତ୍ତିକରି ଶିଶୁର କାର୍ଯ୍ୟକଳାପକୁ ତାତ୍ତ୍ୱିକ ଭାବରେ ପର୍ଯ୍ୟବେକ୍ଷଣ କରୁଥିଲେ । କୌଣସି ବ୍ୟକ୍ତିଗତ ମନୋଭାବ ଦ୍ୱାରା ପ୍ରଭାବିତ ହୋଇ ବା ବିଭିନ୍ନ ଅବସ୍ଥାକୁ ନିୟନ୍ତ୍ରଣାଧୀନ ନକରି ଶିଶୁର ଆଚରଣ ସମ୍ବନ୍ଧରେ ମତବ୍ୟକ୍ତ କରିବା ବିଜ୍ଞାନ-ସମ୍ମତ ନୁହେଁ । ଏଥିରୁ ପ୍ରାପ୍ତ ତଥ୍ୟ ଅନେକ ସମୟରେ ବିଭ୍ରାନ୍ତିକର ଓ ମୂଲ୍ୟହୀନ

ଅଟେ । ଗୋଟିଏ ପିଲାକୁ କୌଣସି ଗୋଟିଏ ଜିନିଷ ଆଣିବା ପାଇଁ କହିଲେ ସେ ଯଦି ମନା କରିଦିଏ ତାକୁ ଅମାନିଆ ବା ଅବାଧ୍ୟ ବୋଲି କହିବା ଠିକ୍ ନୁହେଁ । ଏଭଳି ଧାରଣା କରିବାରେ କେବଳ ବ୍ୟକ୍ତିଗତ ମନୋଭାବ ହିଁ ପ୍ରକାଶ ପାଏ କିନ୍ତୁ ପିଲାର ଅଭ୍ୟାସ ବା ପ୍ରକୃତିଗତ ଆଚରଣ ସମ୍ବନ୍ଧରେ କୌଣସି ଜ୍ଞାନ ଲାଭ କରିହୁଏ ନାହିଁ । ଶିଶୁ ଅଧ୍ୟୟନ ପାଇଁ ନିମ୍ନଲିଖିତ ବିଜ୍ଞାନ ସମ୍ମତ ପଦ୍ଧତି ରହିଛି ।

(୧) ବ୍ୟକ୍ତିବୃତ୍ତ ପଦ୍ଧତି (Case-history method)

(୨) ଆଚରଣ-ନିରୂପଣ ପଦ୍ଧତି (Behaviour rating)

(୩) ପରୀକ୍ଷଣ ପଦ୍ଧତି (Experimental Method)

(୪) ନୈଦାନିକ ପଦ୍ଧତି (Clinical Method)

(୫) ପ୍ରଶ୍ନାବଳୀ ପଦ୍ଧତି (Questiainnaire & Checklist Method)

ଏଥିମଧ୍ୟରୁ କେତେଗୁଡ଼ିଏ ପଦ୍ଧତି ନିମ୍ନରେ ଆଲୋଚନା କରାଗଲା ।

**ବ୍ୟକ୍ତି ବୃତ୍ତ ପଦ୍ଧତି** (Case-history method)

ଏହି ପଦ୍ଧତିରେ ପିଲା ଜୀବନରେ ଘଟିଥିବା ମୁଖ୍ୟ ଘଟଣାବଳୀ ସଂଗ୍ରହ କରାଯାଏ । ତାର ଅତୀତର କାର୍ଯ୍ୟକଳାପ ଓ ଅଭିଜ୍ଞତାକୁ ବିଶ୍ଳେଷଣ କରି ବ୍ୟକ୍ତିତ୍ୱକୁ ପର୍ଯ୍ୟାଲୋଚନା କରାଯାଏ । ତାର ଆଚରଣ ଓ ଅସ୍ୱାଭାବିକ ବ୍ୟବହାରର ପ୍ରକୃତ କାରଣ ଅନୁଧ୍ୟାନ କରିବା ସହଜସାଧ୍ୟ ହୁଏ । ଏହି ପଦ୍ଧତିରେ ପିଲାର ବ୍ୟକ୍ତିଗତ ଜୀବନ ସମ୍ପର୍କିତ ତଥ୍ୟ ଆହରଣ କରିବା ପାଇଁ ତାର, ବାପା, ମାଆ, ପଡ଼ୋଶୀ, ଶିକ୍ଷକ, ଡାକ୍ତର ଓ ବନ୍ଧୁବାନ୍ଧବ ମାନଙ୍କୁ ପିଲା ବିଷୟରେ ଅନେକ ପ୍ରଶ୍ନ ପଚରାଯାଏ । ପିଲାର ସ୍ୱାସ୍ଥ୍ୟ, ପାରିପାର୍ଶ୍ୱିକ ଅବସ୍ଥା ତଥା ପରିବେଷ୍ଟନୀ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରାଯାଏ । ବିଭିନ୍ନ ପ୍ରକାର ମନସ୍ତାତ୍ତ୍ୱିକ ପରୀକ୍ଷା Test) ଓ ପ୍ରଶ୍ନାବଳୀ ସାହାଯ୍ୟରେ ତାର ମାନସିକ ପ୍ରକ୍ରିୟା ଓ ବ୍ୟକ୍ତିତ୍ୱ ସମ୍ବନ୍ଧୀୟ ତଥ୍ୟ ଲିପିବଦ୍ଧ କରାଯାଏ । ପୂର୍ବ ଇତିହାସ ସଂଗ୍ରହ ଫଳରେ ଏକ ନିର୍ଦ୍ଦିଷ୍ଟ ବ୍ୟବହାରର କାରଣ ଓ ମୂଳସୂତ୍ର ଜଣାଯାଇପାରେ । ଯେଉଁ ପିଲାମାନେ ଘରେ, ସାଇପଡ଼ିଶାରେ ଓ ବିଦ୍ୟାଳୟରେ ବାଞ୍ଛନୀୟ ଆଚରଣ

ପ୍ରଦର୍ଶନ କରନ୍ତି ନାହିଁ, ସେମାନଙ୍କ ବିଷୟରେ ଏହି ପଦ୍ଧତି ସାହାଯ୍ୟରେ ଖବର ସଂଗ୍ରହ କରିହେବ । ସେମାନଙ୍କର ବ୍ୟବହାର ପରିବର୍ତ୍ତନ ପାଇଁ ନିର୍ଦ୍ଦେଶ ଦେବା ନିମନ୍ତେ ଏଭଳି ଖବର ସଂଗ୍ରହ କରିବା ଏକାନ୍ତ ପ୍ରୟୋଜନ ।

ଏ ପଦ୍ଧତିରେ କେତେଗୁଡ଼ିଏ ଦୋଷତ୍ରୁଟି ଲକ୍ଷ୍ୟ କରାଯାଏ । ଯେଉଁମାନଙ୍କ ଠାରୁ ପିଲା ବିଷୟରେ ଖବର ସଂଗ୍ରହ କରାଯାଏ, ସେମାନେ ବେଳେବେଳେ ଭୁଲ ତଥ୍ୟ ଦେଇପାରନ୍ତି । ଦ୍ୱିତୀୟତଃ ସେମାନେ ପିଲା ବିଷୟରେ ଯାହା କହନ୍ତି ତାହା କେତେକାଂଶରେ ସେମାନଙ୍କର ବ୍ୟକ୍ତିଗତ ମନୋଭାବ ଦ୍ୱାରା ପ୍ରଭାବିତ ହୁଏ । ଜୀବନରେ ଘଟିଥିବା କେତୋଟି ଘଟଣା ସହିତ ପିଲାର ଆଚରଣର ସମ୍ପର୍କ ନ ଥାଇ-ପାରେ । ତେଣୁ ଅତି ଯତ୍ନ ସହକାରେ ପିଲାର ପୂର୍ବ ଇତିହାସ ସଂଗ୍ରହ କରିବା ଉଚିତ୍ ଏବଂ ଘଟଣାବଳୀର ଆଶ୍ରୟ ନେଇ ତାର ଆଚରଣ ପର୍ଯ୍ୟାଲୋଚନା କରିବାରେ ଯଥେଷ୍ଟ ସାବଧାନତା ଅବଲମ୍ବନ କରିବା ଉଚିତ୍ ।

**ପରୀକ୍ଷଣ ପଦ୍ଧତି** (Experimental method)

କେବଳ ଶିଶୁ ମନୋବିଜ୍ଞାନ କାହିଁକି, ମନୋବିଜ୍ଞାନର ସବୁ ବିଭାଗରେ ପରୀକ୍ଷଣ ପଦ୍ଧତିର ପ୍ରୟୋଗ କରାଯାଇଥାଏ । ପ୍ରାକୃତିକ ଉପାୟରେ ଘଟୁଥିବା ଆଚରଣକୁ ପର୍ଯ୍ୟବେକ୍ଷଣ କରିବା ପାଇଁ ଅପେକ୍ଷା ନ କରି ପରୀକ୍ଷାଗାରରେ କୃତ୍ରିମ ଉପାୟରେ ଘଟଣାବଳୀ ସୃଷ୍ଟି କରି ଓ ଗୋଟିଏ ବ୍ୟତୀତ ଅନ୍ୟସବୁ ଉପାଦାନକୁ ନିୟନ୍ତ୍ରିତ କରି ପିଲାର ବ୍ୟବହାର ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ କରାଯାଏ । ଅନ୍ୟ କୌଣସି ସମୟରେ ବା ଅନ୍ୟ କୌଣସି ସ୍ଥାନରେ ପରୀକ୍ଷଣର ସମସ୍ତ ନିୟମ ଅନୁସରଣ କଲେ ଠିକ୍ ସେହି ଫଳ ମିଳିବ ବୋଲି ଆଶା କରାଯାଏ । ଶିଶୁମାନଙ୍କର ପରିବେଷ୍ଟନୀରେ କୌଣସି ପରିବର୍ତ୍ତନ ହେଲେ ଶିଶୁମାନଙ୍କୁ ତାହା କିପରି ପ୍ରଭାବିତ କରେ, ତାହା ଏହି ପଦ୍ଧତି ସାହାଯ୍ୟରେ ଅନୁଶୀଳନ କରିହୁଏ ।

ଶିଶୁମାନଙ୍କ ପାଇଁ ଗୋଟିଏ ନୂତନ ଶିକ୍ଷାଦାନ ପ୍ରଣାଳୀର କାର୍ଯ୍ୟକାରିତା ବା ସଫଳତା ଅନୁଧାନ କରିବା ପାଇଁ ଦୁଇଦଳର ସମବୟସ୍କ ଓ ସମବୁଦ୍ଧି ସମ୍ପନ୍ନ ଶିଶୁଙ୍କୁ ନିଆଯାଇପାରେ । ତା' ମଧ୍ୟରୁ ଗୋଟିଏ ଦଳ ଶିଶୁଙ୍କୁ ନୂତନ ଶିକ୍ଷାଦାନ ପ୍ରଣାଳୀରେ ଶିକ୍ଷା ଦିଆଯାଉ । ପ୍ରଶିକ୍ଷଣ ପୂର୍ବରୁ ଓ ପରେ ଦୁଇଦଳର ଶିଶୁମାନଙ୍କର ମାନସିକ ସ୍ଥିତି ପରୀକ୍ଷଣ କରାଯାଉ । ଯଦି ନୂତନ ପ୍ରଣାଳୀରେ ଶିକ୍ଷା ପାଇବା ଫଳରେ

ଯେଉଁ ଦଳଟି ଶିକ୍ଷା ପାଇଲା ସେ ଦଳ ଅନ୍ୟଦଳ ତୁଳନାରେ ଅଧିକ ପରିମାଣରେ କୃତିତ୍ୱ ହାସଲ କରେ, ତେବେ ନୂତନ ଶିକ୍ଷାଦାନ ପ୍ରଣାଳୀ ଅଧିକ ସଫଳ ବୋଲି ବୁଝିବାକୁ ହେବ । ଶିଶୁ ପାଇଁ ବିଦ୍ୟାଳୟ, ପ୍ରଶିକ୍ଷଣ ପ୍ରଣାଳୀ, ପାଠ୍ୟସୂଚୀ ଇତ୍ୟାଦି ଅନେକ ବିଷୟରେ ଉପଯୋଗିତା ଏହି ପ୍ରଣାଳୀ ସାହାଯ୍ୟରେ ଅନୁଧ୍ୟାନ କରିହେବ । ଏହି ପଦ୍ଧତି ସାହାଯ୍ୟରେ ମିଳୁଥିବା ତଥ୍ୟ ଅଧିକ ବିଶ୍ୱାସଯୋଗ୍ୟ ଓ ନିର୍ଭୁଲ ଅଟେ । ଏହିଁ କାରଣରୁ ମନୋବିଜ୍ଞାନରେ ବ୍ୟବହୃତ ପଦ୍ଧତିମାନଙ୍କ ମଧ୍ୟରେ ପରୀକ୍ଷଣ ପଦ୍ଧତି ଅଧିକ ଉନ୍ନତ ଓ ଶୃଙ୍ଖଳିତ । ଏହା ସାହାଯ୍ୟରେ ସଂଗୃହୀତ ତଥ୍ୟକୁ ବାରମ୍ବାର ପରୀକ୍ଷା କରିବା ସମ୍ଭବପର ଅଟେ ।

ଏହି ପଦ୍ଧତିର ମୁଖ୍ୟ ତ୍ରୁଟି ହେଉଛି, ପରୀକ୍ଷାଗାରରେ କୃତ୍ରିମ ପରିବେଶର ସୃଷ୍ଟି । ଏହି ପଦ୍ଧତି ସାହାଯ୍ୟରେ ମିଳିର ପ୍ରାକୃତିକ ପରିବେଶରେ ଆଚରଣ ସମ୍ବନ୍ଧରେ ଠିକ୍ ଜ୍ଞାନଲାଭ କରିହୁଏ ନାହିଁ । ସେଥିପାଇଁ ପର୍ଯ୍ୟବେକ୍ଷଣ (Observation) ପଦ୍ଧତିର ବିନିଯୋଗ କରିବାକୁ ହେବ ।

## ପର୍ଯ୍ୟବେକ୍ଷଣ ପଦ୍ଧତି (Observational Method)

ଏହି ପଦ୍ଧତି ସାହାଯ୍ୟରେ ଦୈନନ୍ଦିନ ଜୀବନରେ ଓ ପ୍ରାକୃତିକ ପରିବେଶରେ ତଥା ବାସ୍ତବ କ୍ଷେତ୍ରରେ ଶିଶୁର ଆଚରଣ, କ୍ରିୟାକଳାପ ଓ ସ୍ୱଭାବ ସମ୍ବନ୍ଧରେ ମୋଟାମୋଟି ଧାରଣା କରିହୁଏ । ଉଦାହରଣ ସ୍ୱରୂପ ପରୀକ୍ଷାଗାରରେ ଶିଶୁ ଓ ମା' ମଧ୍ୟରେ ଥିବା ସମ୍ପର୍କ, ମାତୃସ୍ନେହ ଇତ୍ୟାଦି ଅନୁଧ୍ୟାନ କରିବା ସମ୍ଭବ ନୁହେଁ । ପ୍ରାକୃତିକ କ୍ଷେତ୍ରରେ ମାତୃ ସ୍ନେହ ଓ ଶିଶୁର ମା ପ୍ରତି ଆକର୍ଷଣ ପର୍ଯ୍ୟବେକ୍ଷଣ ଦ୍ୱାରା ଅନୁଧ୍ୟାନ କରିହେବ ।

ଆଧୁନିକ ଯୁଗରେ ଶିଶୁର ଆଚରଣ ପର୍ଯ୍ୟବେକ୍ଷଣ କରିବା ପାଇଁ ଏକମୁଖୀ ଦର୍ଶନ ପରଦା (one-way mirror screen) ବ୍ୟବହାର କରାଯାଏ । ପର୍ଯ୍ୟବେକ୍ଷକ ଓ ଶିଶୁମାନଙ୍କ ମଧ୍ୟରେ ଏ ପରଦାଟି ରହିଲେ, ପର୍ଯ୍ୟବେକ୍ଷକ ଶିଶୁମାନଙ୍କୁ ଦେଖିପାରିବେ କିନ୍ତୁ ଯେଉଁମାନଙ୍କ ଆଚରଣ ଅନୁଧ୍ୟାନ କରାଯାଉଛି ସେମାନେ ପର୍ଯ୍ୟବେକ୍ଷକଙ୍କୁ ଦେଖିପାରିବେ ନାହିଁ । ଏହାକୁ ବ୍ୟବହାର କଲେ ପର୍ଯ୍ୟବେକ୍ଷକଙ୍କ ଉପସ୍ଥିତି ଦ୍ୱାରା ଶିଶୁର ସ୍ୱାଭାବିକ ବ୍ୟବହାର ବ୍ୟାହତ ହୁଏନାହିଁ । ପର୍ଯ୍ୟବେକ୍ଷକ ନିଜର ବ୍ୟବହାର ଓ ଶିଶୁର ବ୍ୟବହାର ପ୍ରତି ଦୃଷ୍ଟି ଦେଇ ପର୍ଯ୍ୟବେକ୍ଷଣ କରିବା

ଉଚିତ । ନିଜ ଦୃଷ୍ଟିକୋଣରୁ ଶିଶୁର ବ୍ୟବହାର ବ୍ୟାଖ୍ୟା ନ କରିବା ପାଇଁ ଯଥେଷ୍ଟ ସାବଧାନତା ଅବଲମ୍ବନ କରିବା ଉଚିତ । ପର୍ଯ୍ୟବେକ୍ଷଣ ଯେତେଦୂର ସମ୍ଭବ ବୈଜ୍ଞାନିକ ଦୃଷ୍ଟିକୋଣରୁ ହେବା ଉଚିତ । ଏହି ପଦ୍ଧତିର ଦୁର୍ବଳତା ହେଉଛି ଯେ ସମୟେ ସମୟେ ପର୍ଯ୍ୟବେକ୍ଷକର ମନୋଭାବ ଓ ଦୃଷ୍ଟିଭଙ୍ଗୀ ଶିଶୁର ଆଚରଣ ଅଧ୍ୟୟନକୁ ପ୍ରଭାବିତ କରେ । କିଛି ଦୋଷତ୍ରୁଟି ଥିଲେ ମଧ୍ୟ ଅନ୍ୟ ଉପାୟରେ ଯେଉଁସବୁ ଖବର ସଂଗ୍ରହ କରିବା ସମ୍ଭବପର ହୁଏନାହିଁ, ତାହା ପର୍ଯ୍ୟବେକ୍ଷଣ ଦ୍ୱାରା ହିଁ ସମ୍ଭବପର ହୋଇଥାଏ ।

ଶ୍ରେଣୀଗୃହ ଏକପ୍ରକାର ପ୍ରାକୃତିକ ପରିବେଶ । ଶିକ୍ଷକମାନେ ପର୍ଯ୍ୟବେକ୍ଷଣ ଓ ଅନ୍ୟାନ୍ୟ ପଦ୍ଧତିର ଆଶ୍ରୟ ନେଇ ଶିଶୁମାନଙ୍କର ବ୍ୟବହାର ବିଶ୍ଳେଷଣ କରି-ପାରିବେ । ଶିକ୍ଷକଙ୍କର ଶିଶୁ ସହିତ ସମ୍ପର୍କ ଯଥେଷ୍ଟ ଅଧିକ । ସେମାନେ ତାଙ୍କର ଅନୁଭୂତିକୁ ଆଧାର କରି ବିଭିନ୍ନ ପଦ୍ଧତି ସାହାଯ୍ୟରେ ପିଲମାନଙ୍କ ବିଷୟରେ ଖବର ସଂଗ୍ରହ କରିପାରିବେ । ସର୍ବଦା ମନୋବୈଜ୍ଞାନିକ ପରୀକ୍ଷା (Test) ଓ ପ୍ରଶ୍ନାବଳୀର ସାହାଯ୍ୟ ନ ନେଇ ସେମାନେ ପିଲମାନଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରିପାରିବେ ଓ ସେମାନଙ୍କୁ କେତେଗୁଡ଼ିଏ ଛୋଟ ଛୋଟ କାମ କରିବା ପାଇଁ କହିବେ । ଏଥିରୁ ସେମାନେ ପଶୁମାନଙ୍କର ଶାରୀରିକ ଓ ମାନସିକ କାର୍ଯ୍ୟକଳାପ ସମ୍ବନ୍ଧରେ ଜ୍ଞାନଲାଭ କରିପାରିବେ । ଶିକ୍ଷକ କେଉଁଭଳି ତାଙ୍କର ଅନୁଭୂତିର ସାହାଯ୍ୟ ନେଇ ପିଲର ଆଚରଣ ଅଧ୍ୟୟନ କରିପାରିବେ, ସେ ବିଷୟରେ ନିର୍ଦ୍ଦିଷ୍ଟ ସୂଚନା ଦେବା କଷ୍ଟକର । କେତେଗୁଡ଼ିଏ ଉଦାହରଣ ଦିଆଯାଇପାରେ । ଉଦାହରଣ ସ୍ୱରୂପ ପିଲର କେଉଁ ବିଷୟ ପ୍ରତି ଆଗ୍ରହ ଅଛି ଜାଣିବାକୁ ହେଲେ ଶିକ୍ଷକ ତାକୁ ବିଭିନ୍ନ ପ୍ରକାର କାର୍ଯ୍ୟ କରିବା ପାଇଁ ସୁଯୋଗ ଦେବା ଉଚିତ, ଯଥା—ଗୀତ ବୋଲିବା, ଗଳ୍ପ ଲେଖିବା, ଅଙ୍କ କଷିବା, ଚିତ୍ର ଆଙ୍କିବା, ଖେଳ କସରତ କରିବା ଆଦି । ଏଠାରେ ଲକ୍ଷ୍ୟ କରିବାକୁ ହେବ ଯେ ପିଲ କେଉଁ କାର୍ଯ୍ୟ କରିବା ପାଇଁ ଆଗ୍ରହୀ ଓ କେଉଁ କାମ ସେ ଭଲଭାବରେ କରିପାରୁଛି । ତାର ଯେଉଁ କାମ କରିବା ପାଇଁ ଆଗ୍ରହ ବେଶି, ସେହି ବିଷୟରେ ତାକୁ ଶିକ୍ଷା ଦେଲେ, ଶିକ୍ଷା ନିଶ୍ଚିତ ଫଳପ୍ରଦ ହେବ । ବିଭିନ୍ନ ପ୍ରଶ୍ନ ମାଧ୍ୟମରେ ମଧ୍ୟ ତାର ମନୋଭାବ ଓ ଦୃଷ୍ଟିଭଙ୍ଗୀ ସମ୍ବନ୍ଧରେ ଧାରଣା କରିହେବ । ଶ୍ରେଣୀଗୃହରେ ପିଲ ଅନ୍ୟମନସ୍କ ହେବାର ଲକ୍ଷ୍ୟ କଲେ ଶିକ୍ଷକ ପିତାମାତା ଓ ସାଙ୍ଗ-ସାଥୀଙ୍କ ଠାରୁ ପିଲ ବିଷୟରେ ଖବର ସଂଗ୍ରହ କରିପାରିବେ । କାରଣ ଅନୁସନ୍ଧାନ କରି ପ୍ରତିକାରର ବ୍ୟବସ୍ଥା କରିବେ । ବିଭିନ୍ନ ପ୍ରଶ୍ନ ପଚାରି, ଶ୍ରେଣୀଗୃହରେ,

ବିଦ୍ୟାଳୟରେ ଓ ପ୍ରାକୃତିକ ପରିବେଶରେ ଦେଖାଉଥିବା ଆଚରଣକୁ ଅନୁଧ୍ୟାନ କରି ଶିକ୍ଷକ ସମସ୍ୟାତ୍ମକ ଓ ଅସ୍ୱାଭାବିକ ଶିଶୁମାନଙ୍କର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଜାଣିପାରିବେ । ପିଲାର ଅନ୍ତର୍ନିହିତ ଶକ୍ତି ଓ ଦୁର୍ବଳତାକୁ ବିଚାରକୁ ନେଇ ପ୍ରତିକାରର ପନ୍ଥା ନିର୍ଦ୍ଧାରଣ କରିବେ । ଏହିଭଳି ଆହୁରି ଅନେକ ଉଦାହରଣ ଦିଆଯାଇପାରେ ।

ମୋଟ ଉପରେ କହିବାକୁ ଗଲେ ଶିକ୍ଷକ ଶିଶୁ ମନୋବିଜ୍ଞାନର ନିୟମାବଳୀକୁ ଆଧାର କରି ଓ ବିଭିନ୍ନ ପରିସ୍ଥିତିରେ ନିଜର ଅନୁଭୂତିର ସଦୁପଯୋଗ କରି ଶିଶୁମାନଙ୍କର ଆଚରଣ ସମୀକ୍ଷା କରିପାରିବେ ଓ ଆବଶ୍ୟକ ହେଲେ ନିୟନ୍ତ୍ରିତ କରିପାରିବେ । ଶିଶୁମାନଙ୍କୁ ଉପଯୁକ୍ତ ଭାବରେ ଲାଳନପାଳନ କରିବା ପାଇଁ, ପିତାମାତା ଓ ଶିକ୍ଷକର ଶିଶୁ ମନୋବିଜ୍ଞାନରେ ଯଥେଷ୍ଟ ଜ୍ଞାନ ରହିବା ଉଚିତ୍ । ଏହା ଫଳରେ ଶିଶୁର ଉପଯୁକ୍ତ ଶାରୀରିକ ଓ ମାନସିକ ବିକାଶରେ ପିତା ମାତା ଓ ଶିକ୍ଷକ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବେ ।

**ଆମେ ନିଶ୍ଚିତ ଭାବେ ମନେରଖିବା**

- ପ୍ରତ୍ୟେକ ଶିଶୁ ପ୍ରଥମତଃ ଜଣେ ସ୍ୱତନ୍ତ୍ର ବ୍ୟକ୍ତି ଏବଂ ତାକୁ ସେହି ଦୃଷ୍ଟିରେ ଦେଖିବା ଉଚିତ । ଶିଶୁ ଶିଶୁ ମଧ୍ୟରେ ତୁଳନା କରନ୍ତୁ ନାହିଁ ।
- ପିଲାମାନେ ଖେଳ ମାଧ୍ୟମରେ ଶିକ୍ଷା ଲାଭ କରିଥାନ୍ତି । ଯେତେପ୍ରକାର ଖେଳ ଅନୁଭୂତି ଦିଆଯାଇ ପାରେ ତାକୁ ଦିଆଯାଉ ।
- ବିଭିନ୍ନ କାର୍ଯ୍ୟ ମାଧ୍ୟମରେ ଶିଖିବା ପାଇଁ ପିଲାଙ୍କ ଆଗ୍ରହ ସର୍ବାଧିକ । ଏଣୁ ସେମାନେ ନିଜେ ନିଜର ପରିବେଶକୁ ଯେପରି ଆବିଷ୍କାର କରିବେ ଓ ତାର ଉପଯୋଗ କରିବେ, ସେଥିପାଇଁ ସମ୍ପୂର୍ଣ୍ଣ ସୁଯୋଗ ଦେବା ଉଚିତ ।
- ପ୍ରତ୍ୟେକ ଶିଶୁକୁ କୃତକାର୍ଯ୍ୟ ହେବାର ସୁଯୋଗ ଦେବା ଦରକାର । ପ୍ରତ୍ୟେକ ଶିଶୁ ତା'ର ସମସ୍ତ ଚେଷ୍ଟା ପାଇଁ ପୁରସ୍କୃତ ହେବା ଉଚିତ ।
- ପିଲାମାନେ ପ୍ରଶ୍ନ ପଚାରିବା ପାଇଁ ଭଲ ପାଆନ୍ତି । ସଠିକ୍ ଭାବରେ ସେମାନଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେଇ ସେମାନଙ୍କୁ ଉତ୍ସାହିତ କରାଇବା ଉଚିତ୍ । ଯଦି

କୌଣସି ପ୍ରଶ୍ନର ଉତ୍ତର ଜଣା ନାହିଁ, ତାକୁ ସ୍ପଷ୍ଟ ଭାବରେ କହିଦେଇ ଉଭୟେ ମିଶି ଠିକ୍ ଉତ୍ତର ନିର୍ଣ୍ଣୟ କରିବା ଉଚିତ ।

- ପ୍ରାକ୍ ଶୈଶବ ଅବସ୍ଥାରେ କଥୋପକଥନ ଶୈଳୀରେ ଦକ୍ଷତା ହାସଲ କରିବା ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ବିଷୟ । ପିଲାକୁ କିଛି କହିବା ଓ ତା'ଠାରୁ ଶୁଣିବା ଉଭୟ କାର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ । ସେ ନିଜେ କିପରି ଆତ୍ମପ୍ରକାଶ କରି-ପାରିବ, ସେଥିପାଇଁ ତାକୁ ସାହାଯ୍ୟ କରନ୍ତୁ ।

# ଶିଶୁ ଶିକ୍ଷଣ ପ୍ରକ୍ରିୟା

## ଶିକ୍ଷଣ : ଏହାର ତାତ୍ପର୍ଯ୍ୟ ଓ ସ୍ୱରୂପ

## Concept and Nature of Learning।

ମଣିଷର ମନ ଜ୍ଞାନ ବା ତଥ୍ୟର ଗନ୍ତାଘର ବୋଲି ଅନେକଙ୍କର ବିଶ୍ୱାସ । ଏହି ଗନ୍ତାଘରକୁ ଜ୍ଞାନ ବା ତଥ୍ୟ ଦ୍ୱାରା ପରିପୂର୍ଣ୍ଣ କରିବା ଶିକ୍ଷାଦାନର ଉଦ୍ଦେଶ୍ୟ । ଜ୍ଞାନ ଅର୍ଜନକୁ ଶିକ୍ଷଣ କୁହାଯାଏ । ଏହି ଅର୍ଥରେ କହିବାକୁ ଗଲେ "ଯେତେ ଜ୍ଞାନ ସେତେ ଶିକ୍ଷଣ" ଶିକ୍ଷଣର ଏହିଅର୍ଥ ଯୁକ୍ତିଯୁକ୍ତ ନୁହେଁ । ଆମେ ଯାହା ଶିକ୍ଷାକରୁ, ଯେତେ ଜ୍ଞାନ ଆହରଣ କରୁ ତାହା ଯଦି ଆମର ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ, ଆମର କାର୍ଯ୍ୟକଳାପ, ବ୍ୟବହାର ଆଚରଣ ତଥା ବ୍ୟକ୍ତିତ୍ୱକୁ ପ୍ରଭାବିତ ନକରେ ତେବେ ତାହା ପ୍ରକୃତ ଶିକ୍ଷଣ ବୋଲି ଗ୍ରହଣ କରାଯାଇ ନପାରେ ।

ଶିକ୍ଷଣ ଅର୍ଥ ଜ୍ଞାନ ଅର୍ଜନ, ଏହି ଅର୍ଥ ବିପକ୍ଷରେ ଅନ୍ୟ ଏକ ମତବାଦ ମଧ୍ୟ ରହିଛି । ଅତୀତର ଅନୁଭୂତିରୁ ଶିକ୍ଷା ଲାଭ କରି ନିଜର ଆଚରଣ ଓ ବ୍ୟବହାରକୁ ପରିମାର୍ଜିତ କରିବାହିଁ ଶିକ୍ଷଣ । ଜଣେ ଶିଶୁ ବା ବ୍ୟକ୍ତିର ଆଚରଣରେ ଅନେକ ପ୍ରକାରର ପରିବର୍ତ୍ତନ ଦେଖାଯାଇପାରେ । ତେବେ ମନରେ ସ୍ୱତଃ ପ୍ରଶ୍ନ ଉଠିପାରେ । ଆଚରଣ ବା ବ୍ୟବହାରର କେଉଁ ପ୍ରକାର ପରିବର୍ତ୍ତନକୁ ଶିକ୍ଷଣ କୁହାଯିବ ? ଏହି ପରିବର୍ତ୍ତନ କିପରି ସଂଘଟିତ ହୋଇଥାଏ ? ଗୋଟିଏ ଶିଶୁ ବା ବ୍ୟକ୍ତିର ଆଚରଣରେ ଯେତେ ସବୁ ପରିବର୍ତ୍ତନ ଦେଖାଯାଏ ସେସବୁ ପରିବର୍ତ୍ତନ ଶିକ୍ଷଣ ଦ୍ୱାରା ସମ୍ଭବ ହୁଏ କି ? ଶିକ୍ଷଣର ପ୍ରକୃତ ସଂଜ୍ଞା କ'ଣ ?

ମନସ୍ତତ୍ତ୍ୱବିତ୍‌ମାନେ ଶିକ୍ଷଣର ସଂଜ୍ଞା ବିଭିନ୍ନ ଭାବରେ ଦେଇଛନ୍ତି । ମ୍ୟାକ୍‌ଗିଓର୍ ଓ ଇରଅନ (୧୯୫୨), ମନ୍ (୧୯୫୫), ହିଲ୍‌ଗାର୍ଡ଼, ଆଟ୍‌କିନ୍‌ସନ୍ ଓ ଆଟ୍‌କିନସନ୍ (୧୯୭୮), ଗାନେ (୧୯୭୭), ମୁର, ମ୍ୟାକଙ୍ଗ୍ ଓ ସ୍ମିଥ (୧୯୭୮) ଏବଂ ଅନ୍ୟ ଅନେକ ମନସ୍ତତ୍ତ୍ୱବିତ୍‌ମାନେ ଶିକ୍ଷଣର ଅନେକ ସଂଜ୍ଞା ପ୍ରଦାନ କରିଥିଲେ ମଧ୍ୟ କୌଣସି ସଂଜ୍ଞା ସମସ୍ତଙ୍କ ଦ୍ୱାରା ସର୍ବୋଚ୍ଚ ଭାବରେ ଗ୍ରହଣୀୟ ହୋଇପାରି ନାହିଁ ।

ମୁର ଓ ତାଙ୍କର ସହଯୋଗୀଙ୍କ ମତରେ "ସାଧନ, ତାଲିମ୍ ଓ ଅନୁଭୂତି ଫଳରେ ଆଚରଣରେ ଯେଉଁ ପରିବର୍ତ୍ତନ ଦେଖାଯାଏ, ଶିକ୍ଷଣ ସେହି ଆଚରଣଗତ ପରିବର୍ତ୍ତନକୁ ସୂଚାଏ । ଶରୀର ତଥା ମନର କ୍ଷଣସ୍ଥାୟୀ ଅବସ୍ଥା ଫଳରେ ଆଚରଣରେ ଯେଉଁ ପରିବର୍ତ୍ତନ ଦେଖାଯାଏ ତାହା ଶିକ୍ଷଣର ପରିସରଭୁକ୍ତ ନୁହେଁ । ଶିକ୍ଷଣର ଏହି ସଂଜ୍ଞାକୁ ବିସ୍ତୃତ ଭାବରେ ଆଲୋଚନା କଲେ ଶିକ୍ଷଣର ପ୍ରକୃତ ଅର୍ଥ ସ୍ପଷ୍ଟ ହେବ ।

୧ । ଶିକ୍ଷଣ ଆଚରଣଗତ ପରିବର୍ତ୍ତନକୁ ବୁଝାଉଥିଲେ ହେଁ ଆଚରଣଗତ ସମସ୍ତ ପରିବର୍ତ୍ତନ ଶିକ୍ଷଣ ଦ୍ୱାରା ସଂଘଟିତ ହୁଏ ନାହିଁ । ଆଚରଣ ସମ୍ବନ୍ଧୀୟ କେତେକ ପରିବର୍ତ୍ତନ ଶରୀରର ମାଂସପେଶୀର ପରିପକ୍ୱନ, ମାନସିକ ଅବସ୍ଥା, କ୍ଳାନ୍ତି, ବିଷାଦ ଓ ନିଶା ଦ୍ରବ୍ୟ ସେବନ ଫଳରେ ମଧ୍ୟ ସଂଘଟିତ ହୋଇଥାଏ । କିନ୍ତୁ ଏସବୁ ପରିବର୍ତ୍ତନ ଶିକ୍ଷଣ ନୁହେଁ । କେବଳ ସାଧନ, ତାଲିମ୍ ଓ ଅନୁଭୂତି ଫଳରେ ଆଚରଣରେ ଯେଉଁ ପରିବର୍ତ୍ତନ ଦେଖାଯାଏ ତାହାକୁ ହିଁ ଶିକ୍ଷଣ କୁହାଯାଏ ।

୨ । କେବଳ ସାଧନା ଅଭ୍ୟାସ ବା ତାଲିମ୍ ଦ୍ୱାରା ଆଚରଣରେ ପରିବର୍ତ୍ତନ ସମ୍ଭବ ହେଲେ ଯଥେଷ୍ଟ ନୁହେଁ, ସାଧନା, ଅଭ୍ୟାସ, ତାଲିମ୍ ବା ପରବର୍ତ୍ତୀ ସମୟର ଫଳାଫଳ ମଧ୍ୟ ଶିକ୍ଷଣକୁ ପ୍ରଭାବିତ କରିଥାଏ । ଯଦି ସାଧନା ବା ତାଲିମର ଫଳାଫଳ ଶିଶୁ ପାଇଁ କଷ୍ଟଦାୟକ, ବିରକ୍ତିପୂର୍ଣ୍ଣ ବା ନିରାନନ୍ଦ ହୁଏ କିମ୍ବା ଏହି ଫଳାଫଳ ଯଦି ଆନନ୍ଦଦାୟକ ହୁଏ ବା ଶିଶୁର କୌଣସି ଆବଶ୍ୟକତା ପୂର୍ଣ୍ଣ କରିବାରେ ସାହାଯ୍ୟ କରେ ତେବେ ଏହା ଶିଶୁର ଆଚରଣରେ ବା ବ୍ୟବହାରରେ ପରିବର୍ତ୍ତନ ଆଣିବାରେ ସାହାଯ୍ୟ କରିବ । ଉଦାହରଣସ୍ୱରୂପ, କୌଣସି କାର୍ଯ୍ୟ କରିବା ସମୟରେ ବା କରିବା ପରେ ଶିଶୁଟି ଯଦି ଦଣ୍ଡପାଏ, ଯଦି ତାର କାର୍ଯ୍ୟକୁ ଅନ୍ୟମାନେ ନାପସନ୍ଦ କରନ୍ତି ବା ଗାଳି ଦିଅନ୍ତି ତେବେ ସେହି କାର୍ଯ୍ୟ ପୁନର୍ବାର କରିବା ପାଇଁ ଶିଶୁଟି ଚାହେଁ ନାହିଁ । ଅନ୍ୟ ଅର୍ଥରେ କହିବାକୁ ଗଲେ ସାଧନା ବା ଅଭ୍ୟାସ ସମୟରେ ବା ତାପରେ ଶିଶୁଟି ଯଦି କିଛି ପୁରସ୍କାର ପାଏ ବା ତାର କାର୍ଯ୍ୟକୁ ଯଦି ଅନ୍ୟମାନେ ପସନ୍ଦ ତଥା ଗ୍ରହଣ

ତରନ୍ତି ତେବେ ସେ ସେହି କାର୍ଯ୍ୟ ବାରମ୍ବାର କରିବାକୁ ଇଚ୍ଛାକରେ । ଏହିପରିକି ସ୍ୱର୍ଯ୍ୟଙ୍କୁ ପୁନର୍ବଳନଯୁକ୍ତ ସାଧନ (rein forced practice) କୁହାଯାଏ । ତେଣୁ ପୁନର୍ବଳନଯୁକ୍ତ ସାଧନ ଦ୍ୱାରାହିଁ ଶିକ୍ଷଣ ସମ୍ଭବ ହୋଇଥାଏ ।

୩ । ସାଧନ ବା ତାଲିମ ଫଳରେ ଆଚରଣରେ ଯେଉଁ ପରିବର୍ତ୍ତନ ଦେଖାଯାଏ ସେହି ପରିବର୍ତ୍ତନ ସ୍ଥାୟୀ ବା ଅସ୍ଥାୟୀ ହୋଇପାରେ; କିନ୍ତୁ ଆଚରଣରେ ଚିରସ୍ଥାୟୀ ପରିବର୍ତ୍ତନ ପ୍ରକୃତ ଶିକ୍ଷଣ ନୁହେଁ । ଆଚରଣର ଦୀର୍ଘସ୍ଥାୟୀ ବା ଚିରସ୍ଥାୟୀ ପରିବର୍ତ୍ତନ ହିଁ ପ୍ରକୃତ ଶିକ୍ଷଣ । ତେଣୁ କୁହାଯାଇଛି— ପୁନର୍ବଳନଯୁକ୍ତ ସାଧନ ଫଳରେ ଶିଶୁର ଆଚରଣ ବା ବ୍ୟବହାରରେ ଯେଉଁ ଦୀର୍ଘସ୍ଥାୟୀ ବା ଚିରସ୍ଥାୟୀ ପରିବର୍ତ୍ତନ ଦେଖାଯାଏ ତାହାହିଁ ପ୍ରକୃତ ଶିକ୍ଷଣ ।

## ଶିଶୁ ଶିକ୍ଷାର ମୌଳିକ ନୀତି (Principle of learning)

ଶିକ୍ଷଣକୁ ଅନେକ ବନ୍ଧୁରେ ଚିରସ୍ଥାୟୀ ବୋଲି ଗ୍ରହଣ କରିବାରେ କେବଳ ତାତ୍ତ୍ୱିକ ବିଶ୍ଳେଷଣ ଯେ ସନ୍ନିବିଷ୍ଟ ତା ନୁହେଁ, ଶିକ୍ଷଣର ମାନ ନିର୍ଦ୍ଧାରଣରେ ମଧ୍ୟ ଏହାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏପରିକି ଉଚ୍ଚଶିକ୍ଷା କ୍ଷେତ୍ରରେ ମଧ୍ୟ ଶିକ୍ଷଣର ଉଦ୍ଦେଶ୍ୟ ବର୍ଷ ଶେଷରେ ପରୀକ୍ଷାରେ ଭଲ ଲେଖିବାରେ ସୀମିତ ହେଉଅଛି । ପରୀକ୍ଷାରେ କୌଣସି ବିଷୟରେ ପ୍ରଶ୍ନକଲେ ତାର ଉତ୍ତର ପାଇବା କଷ୍ଟକର ହୋଇଯାଏ, ଏହାର କାରଣ ଶିକ୍ଷଣ ଅନେକ ବନ୍ଧୁରେ ଚିରସ୍ଥାୟୀ ନହୋଇ ସ୍ୱଳ୍ପସ୍ଥାୟୀ ହୋଇଯାଉଛି । ଶିଶୁ ଶିକ୍ଷଣରେ ଏହି ବିଷୟର ମଧ୍ୟ କିଛି କମ୍ ଗୁରୁତ୍ୱ ନାହିଁ । ଶିଶୁର ଯୋଗ୍ୟତା ବା ସାମର୍ଥ୍ୟ ବାହାରେ ମଧ୍ୟ ଶିକ୍ଷକ ପ୍ରଭାବ ଦ୍ୱାରା କିମ୍ବା ଶିଶୁର ପିତାମାତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଶିଶୁର ଆଚରଣରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରନ୍ତି । ଶିଶୁର ସାମର୍ଥ୍ୟ, ମାନସିକ ଅଭିରୁଚି, ଆଗ୍ରହ ଓ ବୋଧ ଶକ୍ତିକୁ ଦୃଷ୍ଟିରେ ରଖି ଶିକ୍ଷାଦାନ ନକରି ଶିକ୍ଷକ ଡୋରାଇବା ମାଧ୍ୟମରେ ପିଲାର ବ୍ୟବହାରିକ ପରିବର୍ତ୍ତନ ଦେଖାଇବାକୁ ଚେଷ୍ଟା କରନ୍ତି । ଏହା କେବେ ଦୀର୍ଘସ୍ଥାୟୀ ହୁଏ ନାହିଁ; ମାତ୍ର ପରିଣତି ବୃଦ୍ଧିକୁ ଶିଶୁ କରିବାର ତୁଳନାରେ ସାମର୍ଥ୍ୟ ଦେଖାନ୍ତି । ଶିଶୁର ଏହି [illegible] ଖେଳ, ଅନ୍ୟମନସ୍କତା ଫଳରେ ଭୁଲିଛି ବୋଲି ପିତାମାତା କହନ୍ତି । [illegible] ବିପଦଜନକ ଉକ୍ତାମାନ, ଏହା ଦ୍ୱାରା ଶିଶୁର ମାନସିକ [illegible] ପାଇଁ ତାର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହୁଏ ନାହିଁ । କେବଳ ଯେଉଁ ପଦ୍ଧତିରେ

ଶିକ୍ଷଣ ଦୀର୍ଘସ୍ଥାୟୀ ହୋଇପାରିବ ସେହି ପଦ୍ଧତି ଅବଲମ୍ବନ ହେବା ଉଚିତ । ଶାରୀରିକ ବୃଦ୍ଧି ଅନୁସାରେ ବୃଦ୍ଧି ହେଲା ପରି ମାନସିକ ସ୍ତରର ମଧ୍ୟ କ୍ରମବିକାଶ ହୁଏ । ପ୍ରଥମ ଅବସ୍ଥାରେ (ଶିଶୁର ଶିକ୍ଷଣ ଅବସ୍ଥାରେ) ଶିକ୍ଷକଙ୍କର ପରିଶ୍ରମ ଅଧିକ ଏବଂ ତାର ବିନିମୟରେ ଶିଶୁର ବ୍ୟବହାରିକ ପରିବର୍ତ୍ତନ କମ୍ ଦେଖାଯାଏ । କାରଣ ଶିଶୁର ସ୍ମରଣଶକ୍ତି, ବୋଧଶକ୍ତି ଗ୍ରହଣଶକ୍ତି କମ୍ ଥାଏ । ଧୀରେ ଧୀରେ ଶିଶୁର ସାମର୍ଥ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଶିକ୍ଷକମାନେ ଅଳ୍ପ ପରିଶ୍ରମରେ ବେଶୀ ଶିକ୍ଷଣ ଆଶା କରନ୍ତି । ଶିକ୍ଷଣ ସମୟରେ ଖୁବ୍ ଶୀଘ୍ର ଅଧିକ ପରିବର୍ତ୍ତନ ଆଶା କରିବା ଅନୁଚିତ ।

୪ । ଶିକ୍ଷଣକୁ ଏକ ଅନ୍ତଃପ୍ରକ୍ରିୟା (Internal Process) ଭାବରେ ଗ୍ରହଣ କରାଯାଏ । ତେଣୁ ଅବିଳମ୍ବିତ ବା ସଙ୍ଗେ ସଙ୍ଗେ (immediate) ବ୍ୟବହାରିକ ପରିବର୍ତ୍ତନ ନହେଲେ ମଧ୍ୟ ଶିକ୍ଷଣ ଯେ ସମ୍ଭବ ଏହା ମନସ୍ତାତ୍ତ୍ୱିକ ଦୃଷ୍ଟି-କୋଣରୁ ଗ୍ରହଣଯୋଗ୍ୟ । ସଫଳ ଶିକ୍ଷଣ ଉପଯୁକ୍ତ ପରିସ୍ଥିତି ସୃଷ୍ଟି କଲେ ତାହା ନିଶ୍ଚୟ ବ୍ୟବହାରରେ ପ୍ରତିଫଳିତ ହେବ ; ମାତ୍ର ସେଥିପାଇଁ ଉପଯୁକ୍ତ ପରିସ୍ଥିତି କିଏ ଓ କିପରି ସୃଷ୍ଟି କରାଯିବ ତାର ଉପଯୁକ୍ତ ଗବେଷଣା କରି ପ୍ରକୃତ ଶିକ୍ଷଣ ହୋଇଛି କି ନାହିଁ, ତାହା ନିର୍ଦ୍ଧାରଣ କରାଯିବା ଉଚିତ । ଦୁର୍ଭାଗ୍ୟବଶତଃ ବହୁତ କମ୍ ସ୍ଥଳରେ ଏହା ହେଉଛି । ମାତ୍ର ଶିଶୁ ଶିକ୍ଷଣ କ୍ଷେତ୍ରରେ ଏହାର ବେଶ୍ ଗୁରୁତ୍ୱ ରହିଛି । ପିଲାମାନଙ୍କ ଶିକ୍ଷଣ କ୍ଷେତ୍ରରେ ଧୈର୍ଯ୍ୟର ଆବଶ୍ୟକତା ଅନେକ । ପିଲାମାନେ ଖୁବ୍ ଶୀଘ୍ର ବାହ୍ୟ ପାରିପାର୍ଶ୍ୱିକ ଅବସ୍ଥା (external evironment) ଦ୍ୱାରା ପ୍ରଭାବିତ ହୋଇଯାଆନ୍ତି । ତାଙ୍କର ଶିକ୍ଷଣ ସମ୍ପୂର୍ଣ୍ଣ ହୋଇଥିଲେ ମଧ୍ୟ ସଠିକ୍ ଉତ୍ତର ଦେଇ ପାରନ୍ତି ନାହିଁ । ତେଣୁ ଶିକ୍ଷକ ଖୁବ୍ ଧୈର୍ଯ୍ୟର ସହିତ ଶିଶୁ ଶିକ୍ଷଣର ମାନନିର୍ଦ୍ଧାରଣ କରିବା ଉଚିତ । ରାଗିକରି ପାଟିକଲେ ବା ଦଣ୍ଡଦେଲେ ଶିଶୁର ବ୍ୟବହାରିକ ପରିବର୍ତ୍ତନ ଯାହାକି ସାଧାରଣ ଭାବରେ ଉପଯୁକ୍ତ ପରିସ୍ଥିତିରେ ଦେଖା ଦେଇଥାଆନ୍ତା ସେଥିରେ ବ୍ୟାଘାତ ସୃଷ୍ଟି ହୁଏ । ଶିକ୍ଷକ ସବୁବେଳେ ମନେରଖିବା ଉଚିତ ଯେ ବ୍ୟବହାରିକ ପରିବର୍ତ୍ତନ ପ୍ରଦର୍ଶନ ନହେବାର ଅର୍ଥ ନୁହେଁ ଯେ ଶିକ୍ଷଣର ଅଭାବ ବା ବୁଝାମଣାର ଅଭାବ ।

୫ । ଆଚରଣଗତ ପରିବର୍ତ୍ତନ ଦୁଇଟି ଦିଗରେ ଦେଖାଯାଇପାରେ । ପ୍ରଥମତଃ ପିଲାମାନେ ଉତ୍ତମ ଅଭ୍ୟାସ, ଅନୁକୂଳ ମନୋବୃତ୍ତି, ମୂଲ୍ୟବୋଧ ତଥା ଉତ୍ତମ ବ୍ୟବହାର କରିବା ଶିକ୍ଷା କରନ୍ତି । ଦ୍ୱିତୀୟତଃ, ପିଲାମାନେ ବିଭିନ୍ନ କାରଣବଶତଃ ମନ୍ଦ ଅଭ୍ୟାସ-

ତଥା ମନ୍ଦ ବ୍ୟବହାର ମଧ୍ୟ ଶିକ୍ଷା କରିପାରନ୍ତି । ଗୃହ ପରିବେଶରେ ଗୋଷ୍ଠୀ ବା ସମାଜରେ ତଥା ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରମାନଙ୍କରେ ପିତାମାତା, ଶିକ୍ଷକ ତଥା ଅନ୍ୟ ଲୋକମାନେ ପିଲାମାନଙ୍କଠାରୁ ଯେଉଁ ପ୍ରକାରର ବ୍ୟବହାର ଆଶା କରନ୍ତି ପିଲାମାନେ ସେପରି ବ୍ୟବହାର ପ୍ରଦର୍ଶନ କରିପାରନ୍ତି ବା ନଦେଖାଇ ପାରନ୍ତି । ଉତ୍ତମ ଆଚରଣ ହେଉ ବା ମନ୍ଦ ଆଚରଣ ହେଉ ପିଲମାନେ ଯେଉଁ ଆଚରଣ ପ୍ରଦର୍ଶନ କରନ୍ତି ତାହା ସେମାନେ ଅନ୍ୟମାନଙ୍କଠାରୁ ଟେଲିଭିଜନ କାର୍ଯ୍ୟକ୍ରମ, ରେଡ଼ିଓ ତଥା ସିନେମା ଇତ୍ୟାଦି ମାଧ୍ୟମରୁ ଶିଖିଥାନ୍ତି । ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ପ୍ରଧାନ ଦାୟିତ୍ୱ ହେଉଛି କୋମଳମତି ଶିଶୁମାନଙ୍କୁ ଉପଯୁକ୍ତ ପରିବେଶ ମାଧ୍ୟମରେ ଉତ୍ତମ ଆଚରଣ ବା ବ୍ୟବହାର ଶିକ୍ଷା ଦେବା ।

ଉପରୋକ୍ତ ଆଲୋଚନାରୁ ଶିକ୍ଷଣର ଅର୍ଥ କେତେକାଂଶରେ ସ୍ପଷ୍ଟ ହେଉଥିଲେ ମଧ୍ୟ ଏହାର ସ୍ୱରୂପ ଆଲୋଚନା କଲେ ଏହାର ଅର୍ଥ ଅଧିକ ସ୍ପଷ୍ଟ ହୋଇପାରିବ ।

## ଶିକ୍ଷଣ ହିଁ ବୃଦ୍ଧି

ଶିକ୍ଷଣ ପ୍ରକ୍ରିୟା ମାଧ୍ୟମରେ ପିଲାମାନଙ୍କର ଆଚରଣ ବା ବ୍ୟବହାରରେ ପରିବର୍ତ୍ତନ ଆସେ । ଶିକ୍ଷଣ ଦ୍ୱାରା ପିଲାମାନଙ୍କର ନିଜ ନିଜ ପରିବେଶ ସମ୍ବନ୍ଧରେ ଥିବା ଜ୍ଞାନ ବୃଦ୍ଧିପାଏ । ସେମାନଙ୍କର ଚତୁଃପାର୍ଶ୍ୱରେ ଯାହାସବୁ ଘଟିଯାଉଛି ସେ ସମ୍ବନ୍ଧରେ ପିଲାମାନେ ଅଧିକରୁ ଅଧିକ ଜାଣିପାରନ୍ତି । ଶିକ୍ଷଣ ଦ୍ୱାରା ହିଁ ସେମାନଙ୍କର ଦକ୍ଷତା ସାମର୍ଥ୍ୟ ଓ କୌଶଳ ଆଦି ବୃଦ୍ଧିପାଏ । ପିଲାମାନଙ୍କର ବୌଦ୍ଧିକ ଓ ସାମାଜିକ ଅଭିବୃଦ୍ଧି ପାଇଁ ଉପଯୁକ୍ତ ପରିବେଶ ଓ ଉନ୍ନତ ଅନୁଭୂତିର ଆବଶ୍ୟକତା ରହିଛି । ସେଥିପାଇଁ ଗ୍ରେଟ ଗ୍ରେଟ ପିଲାମାନଙ୍କ ପାଇଁ ବିଭିନ୍ନ ପ୍ରକାରର ଗଠନମୂଳକ ଖେଳ ଓ କାର୍ଯ୍ୟକ୍ରମର ଆବଶ୍ୟକତା ଅନେକ ବେଶୀ । ପ୍ରାକ୍ ବିଦ୍ୟାଳୟ କେନ୍ଦ୍ରମାନଙ୍କରେ ପିଲାମାନଙ୍କୁ ଆନୁଷ୍ଠାନିକ ବିଦ୍ୟାଳୟ ପରି ବିଭିନ୍ନ ପ୍ରକାର ପାଠ ପଢ଼ାଇବା ପରିବର୍ତ୍ତେ ଖେଳ, ଗୀତ, ନାଚ, ଗପ, କଳା ଓ ସୌନ୍ଦର୍ଯ୍ୟ ଶିକ୍ଷା ମାଧ୍ୟମରେ ଏକ ଏକ ଉନ୍ନତ ପରିବେଶରେ ଶିକ୍ଷଣପୂର୍ଣ୍ଣ ପ୍ରତ୍ୟକ୍ଷ ଅନୁଭୂତି ଦିଆଗଲେ ସେମାନଙ୍କର ସର୍ବାଙ୍ଗୀନ ବିକାଶ ସମ୍ଭବ ହୋଇପାରିବ ।

## ଶିଶୁ ଶିକ୍ଷଣ ଓ ପରିପକ୍ୱନ

ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଅନେକ ପାର୍ଥକ୍ୟ ଦେଖାଯାଏ । ଏହି ପାର୍ଥକ୍ୟ ମଣିଷ ଶରୀରର କ୍ଷୁଦ୍ରତମ ଜୀବକୋଷ ମଧ୍ୟରେ ଥିବା ଜିନ (Jene) ଦ୍ୱାରା ସୃଷ୍ଟି ହୁଏ ବୋଲି ବୈଜ୍ଞାନିକମାନେ ପ୍ରମାଣିତ କରିଛନ୍ତି ।

ମନସ୍ତତ୍ତ୍ୱବିତ୍ ପିଅଜେଁ (Piages)ଙ୍କ ମତରେ ପରିପକ୍ୱନର ଅର୍ଥ ଶିଶୁ ବିକାଶ ସ୍ଥଳରେ ଥିବା ଜିନ୍ (gene)ର ପ୍ରଭାବ । ଜେନ୍‌ସେନଙ୍କ ପରି ଅନେକ ମନୋବିଜ୍ଞାନୀ ମତ ଦିଅନ୍ତି ଯେ ଏହି ପରିପକ୍ୱନ (maturation) ଏକ ପୂର୍ଣ୍ଣ ବୟସ୍କ ବ୍ୟକ୍ତିର ସାମର୍ଥ୍ୟକୁ ଅନେକାଂଶରେ ନିର୍ଣ୍ଣୟ କରିଥାଏ । ଓ୍ୱାଟସନ (Watson) ଓ ସ୍କିନର (Skinner)ଙ୍କ ପରି ମନୋବିଜ୍ଞାନୀମାନେ ମତ ଦିଅନ୍ତି ଯେ ପୁନଃବଳନ ନୀତି (reinforcement Principles) ଉପଯୋଗ କରାଯାଇ ଯେକୌଣସି ପ୍ରକାରର ସାମର୍ଥ୍ୟ ଥିବା ବ୍ୟକ୍ତି ସୃଷ୍ଟି କରାଯାଇପାରିବ । ଏଣୁ ମଣିଷ ଜୀବନରେ ଅନୁକୂଳ ପରିସ୍ଥିତିର ପ୍ରଭାବ ସବୁଠାରୁ ଅଧିକ । ଅଧିକାଂଶ ମନୋବିଜ୍ଞାନୀ ବିଶ୍ୱାସ କରନ୍ତି ଯେ (gene) ଜିନ୍ ଏହି ସାମର୍ଥ୍ୟକୁ କେତେକାଂଶରେ ନିର୍ଣ୍ଣୟ କରୁଥିଲେ ମଧ୍ୟ ଅନୁକୂଳ ପରିସ୍ଥିତିରେ ତାର ସୀମା ବେଶ୍ ବଢ଼ି ଯାଇପାରେ । ମଣିଷ ଜୀବନର ବିକାଶ gene ଓ ପରିପକ୍ୱନ (maturation) ଏବଂ ପରିସ୍ଥିତିର ଯୁଗ୍ମ ପରିଣତି । ପ୍ରକୃତରେ geneକୁ ପରିସ୍ଥିତି ବିନା କଳ୍ପନା କରାଯାଇ ନପାରେ । ଜଣେ କମ ସାମର୍ଥ୍ୟ ଥିବା ଶିଶୁ ଯେଉଁ ପରିସ୍ଥିତିକୁ ବଡ଼ ଜଟିଳ ବା କଠିନର ଭାବେ, ସେ ପରିସ୍ଥିତିକୁ ଅନ୍ୟ ଏକ ଅଧିକ ସାମର୍ଥ୍ୟ ଥିବା ଶିଶୁ ଅତି ସହଜରେ ସମ୍ଭାଳି ନେଇପାରେ । ମଣିଷ ଶିଶୁର ଅସହାୟ ଅବସ୍ଥା ଅନ୍ୟ ଯେ କୌଣସି ପ୍ରାଣୀ ଅପେକ୍ଷା ଦୀର୍ଘ; ମାତ୍ର ଏହି ଶିଶୁ ଏକ ପୂର୍ଣ୍ଣବୟସ୍କ ମଣିଷ ହେବା ପରେ ସବୁଠାରୁ ବୁଦ୍ଧିମାନ ଓ ଶକ୍ତିଶାଳୀ ପ୍ରାଣୀ ହୋଇଥାଏ । ତେଣୁ ଶିଶୁର ଏହି ଅସହାୟ ଅବସ୍ଥା ସମୟରେ ସମାଜର ଏବଂ ପରିବାରର ସାହାଯ୍ୟ ଅତ୍ୟନ୍ତ ଆବଶ୍ୟକ । ଏଥି ସଙ୍ଗେ ସଙ୍ଗେ ମାନସିକ ବିକାଶ ପାଇଁ ପରିପକ୍ୱନ ଉପଯୋଗୀ (maturation) ସମୃଦ୍ଧ ପରିବେଶ (enriched environment)ର ଆବଶ୍ୟକତା ମଧ୍ୟ ରହିଛି ।

ପିଅଜେଁ (Piaget)ଙ୍କ ପରି ମନୋବିଜ୍ଞାନୀମାନେ ଶିଶୁର ମାନସିକ [illegible]ରେ ବିଶ୍ୱାସ କରୁଥିଲେ ମଧ୍ୟ ସମର୍ଥନ କରନ୍ତି ଯେ ଅନୁକୂଳ ପରିସ୍ଥିତିରେ ଏହି

ପର୍ଯ୍ୟାପ୍ତ ଅପେକ୍ଷାକୃତ ଆଗରୁ ଆସିଥାଏ । ତେଣୁ ବିକାଶକୁ ପୂର୍ବ ପରିପକ୍ୱନ ବୋଲି ଧରିନେବା ଅନୁଚିତ୍ । ପିଲା ଶୀଘ୍ର ଚାଲି ଶିଖିବ ବୋଲି ଦୁଇମାସର ପିଲାକୁ ଚଲାଯାଏ ନାହିଁ । କାରଣ ଏହି ପ୍ରକ୍ରିୟା ସାଧାରଣତଃ ଆଠ ମାସରୁ ବାରମାସ ଭିତରେ ହୋଇଥାଏ । ବହୁ ଆଗରୁ ଏହି ପ୍ରକ୍ରିୟାକୁ ଗୁରୁତ୍ୱ ଦେଲେ ଶିଶୁର ଚାଲିବା ପ୍ରକ୍ରିୟା ବାଧାପ୍ରାପ୍ତ ହୁଏ । ଏହାଛଡ଼ା ବୟସ ଅନୁସାରେ ଏହି ସାମର୍ଥ୍ୟର ବିକାଶ ହୋଇଥିଲେ ଯାହା ଆନନ୍ଦ ମିଳିଥାଆନ୍ତା, ତାହା ଏକ କଷ୍ଟଦାୟକ ପ୍ରକ୍ରିୟାରେ ପରିଣତ ହୋଇଯାଏ । ତେବେ ଏହାର ଅର୍ଥ ନୁହେଁ ଯେ ଯେଉଁ ସାମର୍ଥ୍ୟ ପ୍ରକାଶ ପାଉଥିବାର ପାଖାପାଖି ସମୟରେ ହାତଧରି ଚଲାଇବା ଅଦରକାରୀ ବା ଜଟିଳ । ଠିକ୍ ସେହିପରି ମାନସିକ ବିକାଶକୁ ଆଖି ଆଗରେ ରଖି ଶିକ୍ଷଣରେ ପ୍ରବର୍ତ୍ତନ କରାଯିବା ଉଚିତ୍ । ଦୁଇ ବର୍ଷର ପିଲାକୁ କାଗଜ କଲମ ଧରି ଲେଖି ଶିଖାଇବା ଉଚିତ ନୁହେଁ । କାରଣ ଏଥିପାଇଁ ଯେଉଁ ଇନ୍ଦ୍ରିୟ ଗତିଜନକ ମାଂସପେଶୀଗୁଡ଼ିକର ସମନ୍ୱୟ (sensory motor co - ordination) ସୂକ୍ଷ୍ମ ମାଂସପେଶୀର ସମନ୍ୱୟତା (mascular co-ordination) ଏବଂ ପ୍ରଭେଦକରଣ ଦକ୍ଷତା (discrimination ability) ଦରକାର ତାହା ଶିଶୁମାନେ ପରିଲକ୍ଷିତ ହୋଇ ନଥାଏ । ଏହି ଶିକ୍ଷଣ ପାଞ୍ଚ ବର୍ଷରୁ ଛଅ ବର୍ଷ ମଧ୍ୟରେ ଆରମ୍ଭ ହେବା ଉଚିତ୍ । ବିକାଶର ପର୍ଯ୍ୟାପ୍ତ ଉପଯୋଗୀ ଶିକ୍ଷଣ ନହେଲେ ଶିଶୁ ବିକାଶରେ ତାହା କ୍ଷତି ଆଣେ । ତେଣୁ ପରିପକ୍ୱନ (maturation)କୁ ଶିଶୁ ଶିକ୍ଷଣ ସମୟରେ ସବୁବେଳେ ବିଚାରକୁ ନେବା ଉଚିତ୍ ।

## ଫଳପ୍ରଦ ଶିକ୍ଷଣ ପାଇଁ ମୌଳିକ ଉପାଦାନ

ମନୋବିଜ୍ଞାନୀମାନେ ଶିକ୍ଷଣର ମୂଳତତ୍ତ୍ୱ ବିଷୟରେ ସମ୍ପୂର୍ଣ୍ଣ ଏକମତ ନହେଲେ ମଧ୍ୟ କେତୋଟି ପ୍ରକ୍ରିୟା ଉପରେ ଅଧିକାଂଶ ବିଶ୍ୱାସ ରଖନ୍ତି । ଗବେଷଣାଗାରରେ ଉପଲବ୍ଧ କେତୋଟି ଶିକ୍ଷଣର ତତ୍ତ୍ୱ ଅଛି (Theories of learning) ପ୍ରତ୍ୟେକରେ ବ୍ୟକ୍ତ ବା ନୀରବ ଅଭିପ୍ରେରଣା (motivation) ସୃଷ୍ଟି କରିବାକୁ ଅଗ୍ରାଧିକାର ଦିଆଯାଇଛି ।

ଶିକ୍ଷଣ ପ୍ରକ୍ରିୟା ଯଦି କୌଣସି ଅଭିପ୍ରେରଣା (motivation) ଏବଂ ସନ୍ତୋଷ (satisfaction) ମଧ୍ୟରେ ଘଟିତ ହୁଏ ତେବେ ଶିକ୍ଷଣ ସ୍ଥାୟୀ ହୋଇଥାଏ । ଏତଦ୍‌ବ୍ୟତୀତ ଅନ୍ୟ ଶିକ୍ଷଣ ପ୍ରଣାଳୀ ହେଲା, ଶିଶୁର ସ୍ୱତଃସ୍ଫୂର୍ତ୍ତି

ଅନୁସନ୍ଧିତ୍ସା ( Spontaneous curiosity ) ଏବଂ ଆନୁମାନିକ ବିଶ୍ଳେଷଣ (hypothesis testing)ର ବୃଦ୍ଧି କରିବା । ଶିଶୁ ଶିକ୍ଷା ମୁଖ୍ୟତଃ ଗତାନୁଗତିକ ଥିଲା । ବଡ଼ପିଲାମାନେ ଯାହା କରୁଥିଲେ ସାନପିଲାମାନେ ତାକୁ ଅନୁକରଣ କରୁଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ଏହାର ପରିବର୍ତ୍ତନ କରାଯାଇଛି । ଏଥିରେ ପ୍ରତ୍ୟେକ ପିଲାର ନିଜସ୍ୱ ଶକ୍ତି ସାମର୍ଥ୍ୟ ଉପରେ ଅଧିକ ଧ୍ୟାନ ଦିଆଯାଉଛି । ନିଜସ୍ୱ ଢଙ୍ଗରେ କାର୍ଯ୍ୟ କରିବା ପାଇଁ ତାକୁ ଉତ୍ସାହିତ କରାଯାଉଛି । ପିଲାଟି ଉପଯୁକ୍ତ ବ୍ୟବହାର ପ୍ରଦର୍ଶନ କରିବା ପରେ ପରେ ପିଠି ଥାପୁଡ଼େଇବା, ମୁନାପିଲ କହିବା ବା ହସିବା ଇତ୍ୟାଦି ଦ୍ୱାରା ସେହି ବ୍ୟବହାରକୁ ପ୍ରୋତ୍ସାହନ (encouragement) ଦିଆଯାଇଥାଏ । ମାତ୍ର ଯେଉଁଠି ପିଲା ଯେବେ ଯେବେ ଗୀତ ବୋଲୁଛି ବା କିଛି ନୂଆ କାମ କରୁଛି ସେଠାରେ ସଙ୍ଗେ ସଙ୍ଗେ ତାକୁ ପ୍ରଶଂସା କଲେ ହୁଏତ ପିଲାଟି ଲାଜକରି ଆଉ ଗୀତ ନ ବୋଲିପାରେ ବା ଯାହା କରୁଛି ତାହା ବନ୍ଦ କରି ଦେଇପାରେ । ସେଥିପାଇଁ ସେହି କ୍ଷେତ୍ରରେ ଶିକ୍ଷକ ଓ ଶିଶୁର ବାପାମାଆଙ୍କୁ ସାବଧାନ ରହିବାକୁ ପଡ଼େ । ସେଠାରେ ପିଲାର କାର୍ଯ୍ୟ ସ୍ୱତଃ ଶକ୍ତି ବୃଦ୍ଧିକାରୀ (Self reinforcing) ହୋଇଥିବାରୁ ଆଉ ବାହ୍ୟ ପୁନର୍ବଳନର ଆବଶ୍ୟକତା ନଥାଏ । ଶିଶୁ ଯେବେ ଅନ୍ୟର ସାହାଯ୍ୟ ଓ ସହାନୁଭୂତି ଦରକାର କରେ କେବଳ ସେହି ସମୟରେ ପ୍ରୋତ୍ସାହନ ଦେବା ଉଚିତ୍ । ଅବଶ୍ୟ ସ୍ୱତଃସ୍ପୂର୍ତ୍ତ ବ୍ୟବହାର ପ୍ରଦର୍ଶନର କିଛି ସମୟ ପରେ ପ୍ରଶଂସା କରିବା ଦ୍ୱାରା ଏହାର ବୃଦ୍ଧି ହୋଇଥାଏ । ମୋଟ ଉପରେ ପ୍ରଶଂସା ଶିକ୍ଷଣ ପାଇଁ ଏକ ପ୍ରଧାନ ମୌଳିକ ଉପାଦାନ ହୋଇଥିଲେ ମଧ୍ୟ ଯେଉଁ କେତେକ କ୍ଷେତ୍ରରେ ତାହା ଲଜ୍ଜା ବା ସଙ୍କୋଚର କାରଣ ହୋଇଥାଏ ସେଠାରେ ତାକୁ ପରିହାର କରିବା ଉଚିତ୍ ।

## ଅଭିପ୍ରେରଣା (motivation)

ଶିଶୁଟି ବିଦ୍ୟାଳୟକୁ ଆସିବା ସମୟରେ ଶିକ୍ଷକମାନେ ଏକ ପ୍ରକାର ଧରି ନଥିଲେ ଯେ ଶିଶୁ ମନରେ କିଛି ଦୁଃଖ, ବିଷାଦ ବା ଦୁର୍ବଳତା ନାହିଁ । ତେଣୁ ପ୍ରାକ୍ ବିଦ୍ୟାଳୟକୁ ଆସିବା ମାତ୍ରେ ସେମାନେ ତାଙ୍କର ଶିକ୍ଷାଦାନ ଆରମ୍ଭ କରନ୍ତି ଯାହା କି ମୁଖ୍ୟତଃ କେଶୋପଚାରେ ସୀମିତ ରହୁଥାଏ । ଏହି ଶିକ୍ଷାଦାନର ଅନ୍ୟତମ ମୂଳ ଉପାଦାନ ଅଭିପ୍ରେରଣା (motivation) ପ୍ରତି ସାଧାରଣତଃ ଦୃଷ୍ଟିପାତ କରାଯାଏ ନାହିଁ । କେବଳ ପୂର୍ବୋକ୍ତ ପୁନର୍ବଳନ (reinforcement) ବ୍ୟବହାର କରି ଶିକ୍ଷକ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବାକୁ ଚେଷ୍ଟା କରନ୍ତି । ସେମାନେ ଭୁଲି ଯାଆନ୍ତି ଯେ ପୁନ-

ଫଳନ (reinforcement) ଅଭିପ୍ରେରଣା (motivatiion) ଉପରେ ନିର୍ଭରଶୀଳ । ଯଦି ପିଲାଟିକୁ ଭୋକ ଲାଗୁଛି ତାହେଲେ ତାକୁ "ସୁନାପିଲା" ବୋଲି କହିଲେ ତାର ଶିକ୍ଷାପ୍ରତି ଆଗ୍ରହ ବଢିବ ବୋଲି ଆଶା କରିବା ସମିଚୀନ ନୁହେଁ । କୌଣସି କାରଣରୁ, ଶିଶୁଟି ଶିକ୍ଷକଙ୍କ ପ୍ରତି କ୍ଷୁବ୍ଧ ହୋଇଥିଲେ ଶିକ୍ଷକଙ୍କ ବ୍ୟବହାର (ପ୍ରଶଂସା) ତାକୁ ଭଲ ଲାଗିବ ନାହିଁ । ଶିକ୍ଷକଙ୍କ ମଧୁର ବ୍ୟବହାର ଅନଭିପ୍ରେତ ହୋଇପାରେ । ହୁଏତ ଶିକ୍ଷକ ବ୍ୟସ୍ତ ଥିଲା ପିଲାଟିର ନମସ୍କାରର ପ୍ରତ୍ୟୁତ୍ତର ଦେଇ ନଥାଇ ପାରନ୍ତି ବା ଶିଶୁର କଛୁ କହିବାକୁ ଚାହିଁଲା ଅନ୍ତରେ ଶୁଣି ନାହାନ୍ତି । ଏହା ଅନଭିପ୍ରେତ ହେଲେ ମଧ୍ୟ ଶିଶୁ ମନରେ ଦୁଃଖ ଦିଏ । ଏହିସବୁ ପରିସ୍ଥିତିରେ ଯଦି ଶିକ୍ଷକ ଶିଶୁମାନଙ୍କ ସହିତ ଖୋଲାଖୋଲି କଥାବାର୍ତ୍ତା କରନ୍ତି (ଘର ବିଷୟରେ, ଖାଇବା ବିଷୟରେ, କୌଣସି ପଡ଼ୋଶୀ ବିଷୟରେ) ତେବେ ପିଲାଟିର ମନର ଅସନ୍ତୋଷ ସବୁ ଜଣାପଡେ । ଶିଶୁ ତାର ଅଭିଯୋଗ ଉପସ୍ଥାପନ କରିବାର ସୁଯୋଗ ପାଏ । ଶିକ୍ଷକ 'ମୁଁ ଦୁଃଖିତ', 'ମୁଁ ଜାଣିପାରିନି' ଇତ୍ୟାଦି କହିଲେ ଶିଶୁ ଖୁବ୍ ଶୀଘ୍ର ତାର ଅସନ୍ତୋଷ ଭୁଲିଯାଏ । ତା ଛଡା ଯଦି ଶିଶୁଟିର ମନରେ ଘରେ କାହାପ୍ରତି ଅଭିଯୋଗ ଅଛି, ସେଥିରୁ କିଛିଟା ମଧ୍ୟ ଜଣାପଡେ ଏବଂ ସେହିସବୁ ସହାନୁଭୂତି ସହ ବିଶ୍ଳେଷଣ କଲେ ଶିଶୁ ମନରୁ ଦୁଃଖ ଦୂର ହୋଇ ସେ ପରବର୍ତ୍ତୀ ଶିକ୍ଷା ଗ୍ରହଣ ପାଇଁ ପ୍ରସ୍ତୁତ ହୁଏ । ସେହିଦିନ ଶିକ୍ଷା ପାଇଁ ପ୍ରସ୍ତୁତ ନହେଲେ ମଧ୍ୟ ପରବର୍ତ୍ତୀ ଦିନଗୁଡ଼ିକରେ ଶିକ୍ଷକ ଏବଂ ବିଦ୍ୟାଳୟ ପ୍ରତି ତାର ଅନୁକୂଳ ମନୋଭାବ (positive feeling) ଆସେ, ଯାହା ଶିକ୍ଷଣ ପ୍ରକ୍ରିୟାକୁ ଅଧିକ ସହଜ ଓ ଅର୍ଥପୂର୍ଣ୍ଣ କରେ ।

ପ୍ରକୃତ ଶିକ୍ଷାର୍ଥୀର ଏକ ସହାନୁଭୂତିଶୀଳ ଏବଂ ଆନନ୍ଦଦାୟକ ପରିବେଶ ମଧ୍ୟରେ ହେବା ଉଚିତ୍ । ଉଦାହରଣସ୍ୱରୂପ, ପିଲାଙ୍କୁ ଗପ କହିବା ସମୟରେ ତାଙ୍କୁ ପାଖରେ ବସେଇ ସମସ୍ତଙ୍କୁ ସମାନ ଦୃଷ୍ଟି ଦେଇ ଆରମ୍ଭ କରାଯିବା ଉଚିତ୍ ।

## ପିଲାମାନଙ୍କର ସହଯୋଗିତା (Childrens' participation)

ପିଲାମାନେ କେବେ ଶିକ୍ଷା ପ୍ରକ୍ରିୟାରେ ଭାଗ ନେବା ଉଚିତ । 'କାଉ ମାଟିଆ' ଗପ କହିଲାବେଳେ କେବଳ ଚିତ୍ର ଦେଖାଇ ବା କାଉଟିଏ ଥିଲା ବୋଲି ନ କହି ପିଲାଙ୍କୁ ପଚାରନ୍ତୁ 'କଏ କାଉ ଦେଖିଛ ?' 'କାଉ କେମିତି ଡାକେ ?' 'କେଉଁଠି ରହେ ?' ଇତ୍ୟାଦି ପ୍ରଶ୍ନ ପଚାରି ପିଲାଙ୍କର ଆଗ୍ରହ ଏବଂ ସହଯୋଗିତା ବୃଦ୍ଧି କରାଯିବା ଉଚିତ୍ । ତା

ନହେଲେ ଶିଶୁମାନେ ଅନ୍ୟମନସ୍କ ହୋଇପାରନ୍ତି; ଏହା ମନେ ରଖିବା ଉଚିତ୍ ଯେ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ଗ୍ରହଣ ସ୍କୁଲ୍ ବାହାରେ, ଘରେ ମଧ୍ୟ ସଂଘଟିତ ହୋଇଥାଏ । ଖେଳକୁଦ, ଭୋଜନ ଇତ୍ୟାଦି ମାଧ୍ୟମରେ ବିକାଶ ସଙ୍ଗେ ସଙ୍ଗେ ପିଲାମାନେ ଅନେକ ବହୁତ ବିଷୟରେ ଧାରଣା ପାଇଥାନ୍ତି । ଏହି ଧାରଣାକୁ ଭିତ୍ତିକରି ତା ଉପରେ ନୂତନ ଶିକ୍ଷା ଦିଆଗଲେ ତାହା ଦୀର୍ଘସ୍ଥାୟୀ ହୋଇଥାଏ । ଯେଉଁ ବିଷୟରେ ଶିକ୍ଷା ଦିଆଯିବ ସେହି ବିଷୟ ଯେ କେବଳ ନୂତନ ଉପଯୋଗୀ ହେବ ତା ନୁହେଁ, ତାହା ସମ୍ବନ୍ଧରେ ବୁଝିହେବା ପରି ପରିବେଷଣ କରାଯିବା ଉଚିତ୍ । ଯେଉଁପାଇଁ ପିଲାଙ୍କ ପାଇଁ ବଡ଼ ବଡ଼ ଚିତ୍ରର ବ୍ୟବହାର କରାଯାଏ । ଅକ୍ଷରଗୁଡ଼ିକ ମଧ୍ୟ ବଡ ଏବଂ ସିଧାସଳଖ ହେବା ଆବଶ୍ୟକ । ପିଲାମାନଙ୍କର ସହଯୋଗ ଦ୍ୱାରା କଥାଟି ସ୍ପଷ୍ଟ ହେଉଛି କି ନାହିଁ ସେ ବିଷୟରେ ମଧ୍ୟ ଧାରଣା କରି ସେହି ଅନୁସାରେ ପଦକ୍ଷେପ ନିଆଯାଇପାରେ । ଯଦି ପିଲା ଠିକ୍ ଉତ୍ତର ଦିଏ ତେବେ ତାକୁ ପୁଣି ସ୍ପଷ୍ଟଭାବରେ ସମସ୍ତଙ୍କୁ ଶୁଣାଇ ଦେବା ଦ୍ୱାରା ଜାଣିଥିବା ପିଲାର ମନ ଖୁସି ହେବା ସଙ୍ଗେ ସଙ୍ଗେ ଅନ୍ୟମାନେ ମଧ୍ୟ ମନେ ରଖନ୍ତି ।

ପିଲାଟି ନ କହି ପାରିଲେ ଠିକ୍ ଉତ୍ତରଟି ତାକୁ କହି ପୁଣି ତା ଦ୍ୱାରା କୁହାଇବା ଦରକାର । ବହୁତ କ୍ଷେତ୍ରରେ ପିଲାଟି କେବଳ ମୁଣ୍ଡ ହଲାଇ ଦିଏ । ଏହି କ୍ଷେତ୍ରରେ ପିଲାଟି ନିଜେ କହିବା ଉପରେ ଜୋର ଦେବା ଉଚିତ୍ । ଏହି ଭାଷାଗତ ପ୍ରକାଶ ଫଳରେ ଶିଶୁର ବୌଦ୍ଧିକ ବିକାଶ ବିଶେଷ ତ୍ୱରାନ୍ୱିତ ହୋଇଥାଏ ଏବଂ ବ୍ୟକ୍ତିତ୍ୱର ମଧ୍ୟ ବିକାଶ ହୋଇଥାଏ ।

**ଦୋହରାଇବା (Repetition)**

**ଅଭ୍ୟାସ (Practice)**

ଶିକ୍ଷା ଜଗତର ଅନ୍ୟତମ ମୌଳିକ ଉପାଦାନ । ଶିଶୁର ସ୍ମୃତି ଶକ୍ତି ପ୍ରଖର ହୋଇ ନଥିବାରୁ ଏବଂ ଏହା ବୌଦ୍ଧିକ ବିକାଶରେ ସୀମିତ ହୋଇଥିବାରୁ ଗୋଟିଏ ବିଷୟରେ ବୁଝାଇଲା ବେଳେ ବାରମ୍ବାର ବୁଝାଇବା ଉଚିତ୍ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଗୋଟିଏ ଶିଶୁକୁ ଗୋଟିଏ ପ୍ରଶ୍ନ ଦଶଥର ପଚାରିବା । ଦଶଜଣ ଶିଶୁଙ୍କରେ ପ୍ରତ୍ୟେକଙ୍କୁ ସେହି ପ୍ରଶ୍ନ ପଚାରିବା ଦ୍ୱାରା ସେମାନେ ଉତ୍ତର ଦେବା ସଙ୍ଗେ ସଙ୍ଗେ ଅନ୍ୟମାନେ ଶୁଣନ୍ତି ଏବଂ ଶିକ୍ଷାଦାନ ବାରମ୍ବାର (repeatedly) ସଂଘଟିତ ହୁଏ; ଏଥିରୁ ପ୍ରତ୍ୟେକ ଶିଶୁ [illegible] ଉତ୍ତର ଦେବା ପାଇଁ ଆଗ୍ରହୀ ହୋଇଥିବାରୁ ବା ଜାଣିବାକୁ ଇଚ୍ଛା ଥିବାରୁ ଏହାକୁ ବାରମ୍ବାର ଦୋହରାଇଲେ ବି ଶିଶୁମାନଙ୍କୁ ବିରକ୍ତି ଲାଗେ ନାହିଁ ।

ଏହି "ଦୋହରାଇବା" ସମୟରେ କେହି ଭୁଲ ଉତ୍ତର ଦେଲେ ନାହିଁ, ଭୁଲ ହେଲା ବୋଲି ନ କହି ସିଧାସଳଖ ଭାବରେ ଠିକ୍ ଉତ୍ତରଟି କହିବା ଦରକାର । କୌଣସି କାରଣରୁ ପିଲାଟି ନ କହି ପାରିଲେ ତାର ପାଖ ପିଲାକୁ ପଚାରି ପୁଣି ତାକୁ ପଚରା-ଯାଇପାରେ । ସବୁ ପିଲା ମଧ୍ୟ ସବୁ ପ୍ରଶ୍ନର ଠିକ୍ ଉତ୍ତର ଦେବେ ତାର ପ୍ରଚେଷ୍ଟାରେ ରହିଲେ ଶିଶୁମାନଙ୍କ ପାଇଁ ଶିକ୍ଷା ଗ୍ରହଣ ଆନନ୍ଦଦାୟକ ହୁଏ ନାହିଁ ।

ପିଲାମାନଙ୍କୁ ଯେ କୌଣସି ଜିନିଷ ବିଷୟରେ ଧାରଣା ଦେଲାବେଳେ ଯେତେଦୂର ସମ୍ଭବ ସେଠାରେ ପ୍ରକୃତ ଜିନିଷର ବ୍ୟବହାର କଲେ ସେ ବିଷୟରେ ଧାରଣା ଦୃଢ଼ୀଭୂତ ହୁଏ । ଯେଉଁଠି ସମ୍ଭବ ନୁହେଁ ସେହି ସବୁ ପଦାର୍ଥର ବଡ଼ ବଡ଼ ଚିତ୍ର ବା କଣ୍ଢେଇର ବ୍ୟବହାର କରାଯିବା ଉଚିତ୍ । ପିଲାମାନେ ବୁଝିବା ପରି ସରଳ ଭାଷା ବ୍ୟବହାର କରିବା ଉଚିତ୍ । ଏହାଛଡ଼ା ଭାବ ପରିପ୍ରକାଶ ସମୟରେ ଅଭିନୟର ଆବଶ୍ୟକତା ରହିଛି । "ହସିବା" ବିଷୟରେ ବର୍ଣ୍ଣନା କଲାବେଳେ ଶିକ୍ଷକଙ୍କର ମୁହଁଟି ହସ ହସ ହେବା ଦରକାର । ତାହା ଫଳରେ ଶିକ୍ଷଣ ପ୍ରକ୍ରିୟା ଆନନ୍ଦଦାୟକ ହୋଇଥାଏ ।

ଶିକ୍ଷାଦାନର ଅନ୍ୟତମ ଉପାଦାନ ହେଲା ପୁନର୍ବଳନର ବ୍ୟବହାର । ଏହି ବିଷୟରେ ପୂର୍ବରୁ ଆଲୋଚନା କରାଯାଇଛି । ଏଠାରେ କେବଳ ଏତିକି ସୂଚାଇ ଦିଆଯାଉଛି ଯେ, ପ୍ରାକ୍ ବିଦ୍ୟାଳୟରେ ପୁର୍ନବଳନ (reinforcement)ର ବହୁଳ ବ୍ୟବହାର ହେବା ଉଚିତ୍ । ପିଲାଟି ଭଲ କାମ କଲେ, ଠିକ୍ ଉତ୍ତର ଦେଲେ, ଚିତ୍ର ଆଙ୍କିଲେ, ଗୀତ ବୋଲିଲେ ପ୍ରଶଂସା କରିବା ଦରକାର । ଫଳରେ ପିଲାମାନଙ୍କର ମନ ଖୁସି ହୁଏ ଏବଂ କାମ କରିବାରେ ଆଗ୍ରହ ବଢ଼େ । ତେଣୁ ଏକ ସୁସ୍ଥ ପରିବେଶ ପାଇଁ ପୁନର୍ବଳନର ବହୁଳ ବ୍ୟବହାର ଦରକାର ।

ଏହି ପୁନର୍ବଳନ ସମୟୋପଯୋଗୀ ହେବା ଦରକାର । ପୁନର୍ବଳନ (reinforcement' ତେରି ହେଲେ ତାହା ବ୍ୟବହାରକୁ ନିୟନ୍ତ୍ରଣ କରିବାର ଶକ୍ତି ହରାଇଥାଏ ।

ଏ ସମସ୍ତ ପ୍ରକାର କାର୍ଯ୍ୟ ଶିକ୍ଷକଙ୍କର ନିଷ୍ଠା ଉପରେ ନିର୍ଭର କରେ । ଶିଶୁମାନଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ପ୍ରଦର୍ଶନ କରି ଉପର ବର୍ଣ୍ଣିତ ପଦ୍ଧତିଗୁଡ଼ିକୁ ପ୍ରୟୋଗ କଲେ ଫଳପ୍ରଦ ହୁଏ ।

## ବ୍ୟକ୍ତିଗତ ପାର୍ଥକ୍ୟ

### ( Individual difference )

ପ୍ରତ୍ୟେକ ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ ଭିନ୍ନ । ଏହି ଭିନ୍ନତା ଶାରୀରିକ, ମାନସିକ, ବ୍ୟବହାରିକ ତଥା ସାମାଜିକ ଦୃଷ୍ଟିକୋଣରୁ ଉପଲବ୍ଧ ହୁଏ । ବୟସ୍କ ଲୋକର ଭିନ୍ନତା ତାର ଜନ୍ମଗତ ଗୁଣ ତଥା ସେ ଯେଉଁ ପରିସ୍ଥିତି ମଧ୍ୟରେ ଗଢି କରିଛି ତାର ଏକ ମିଶ୍ରିତ ପ୍ରଭାବ ଅଟେ । ଏହି ଭିନ୍ନତା ଅଳ୍ପେ ବହୁତେ ସଦ୍ୟଜାତ ଶିଶୁମାନଙ୍କଠାରେ ମଧ୍ୟ ଦେଖିବାକୁ ମିଳେ । ଅବଶ୍ୟ ଏହାର ପ୍ରକାର ଭେଦ କମ୍ ବେଶୀ ହୋଇଥାଏ । ଏ ସବୁ ଭିନ୍ନତା ସତ୍ତ୍ୱେ ଆମ ଶିକ୍ଷା ପ୍ରଣାଳୀ ବା ସାମାଜିକ ଜୀବନରେ ଏହି ବ୍ୟକ୍ତିଗତ ପାର୍ଥକ୍ୟକୁ ଏତେ ଗୁରୁତ୍ୱ ଦିଆଯାଏ ନାହିଁ । ଅନେକ ସମୟରେ ଶିକ୍ଷକ କୌଣସି ଏକ ଶିଶୁକୁ ଅନ୍ୟ ଶିଶୁ ପରି ଭଲ ପାଠ ନ ପଢ଼ିଲେ ବ୍ୟସ୍ତ ହୋଇ ଉଠନ୍ତି । ସେମାନଙ୍କ ଧାରଣା ଯେ ବେଶୀ ସମୟ ପାଠ ପଢ଼ିଲେ ସମସ୍ତଙ୍କର ବିଦ୍ୟା ଓ ବୁଦ୍ଧି ସମାନ ହୋଇଯିବ ।

ପିତାମାତା ଭାବନ୍ତି ଯେ ଶିଶୁଟି ତାଙ୍କ ନିଜସ୍ୱ ଗୁଣର ଅବିକଳ ରୂପ । ତେଣୁ ଶିଶୁର ସାମର୍ଥ୍ୟ ବା ବ୍ୟକ୍ତିତ୍ୱର ଅଭାବ ସେମାନେ ନିଜର ବ୍ୟକ୍ତିଗତ ବିଫଳତା ବୋଲି ଧରି ନିଅନ୍ତି । ବ୍ୟକ୍ତିଗତ ପାର୍ଥକ୍ୟକୁ ଦୃଷ୍ଟି ନ ଦେଇ ଅଧିକ ସମୟ ପଠନ ତଥା ଅଧିକ ଦଣ୍ଡ ପ୍ରୟୋଗ କରି ସେମାନେ ଶିଶୁର ମାନସିକ ତଥା ବ୍ୟବହାରିକ ପରିବର୍ତ୍ତନ ଆଣିବା ପାଇଁ ଚେଷ୍ଟା କରନ୍ତି । ସେହିପରି କେତେକ ଭାବନ୍ତି ଯେ ଶିକ୍ଷା ମାଧ୍ୟମରେ ସବୁ ଶିଶୁକୁ ଏକ ପ୍ରକାର ସାମର୍ଥ୍ୟର ଅଧିକାରୀ କରାଯାଇପାରେ । ଯେଉଁ ଶିଶୁଟି ଭଲ ନ ପଢ଼ିଲା ସେ ଶିକ୍ଷକଙ୍କର ବିଫଳତା ବା ନିଜର ବଂଶଗତ ଦୁର୍ବଳତାର ପରିଚାୟକ ବୋଲି ଧରି ନିଆଯାଏ । ସହାନୁଭୂତି ଓ ଧୈର୍ଯ୍ୟର ପାତ୍ର ନ ହୋଇ ରାଗ ଓ ଦଣ୍ଡ ପାଇଥାଏ । ହତାଶ ବା ବିଫଳ ହୋଇଥିବାରୁ ଶିଶୁର ଯେ ବିକାଶ କ୍ଷୁର୍ଣ୍ଣ ହୁଏ ତା ନୁହେଁ, ପରବର୍ତ୍ତୀ କାଳରେ ତାର ବୟସ୍କମାନଙ୍କ ପ୍ରତି ଘୃଣା ଓ ବିରକ୍ତି ଜାତ ହୁଏ । ଥରେ ଏହି ଭାବ ଜାତ ହେଲେ ତାର ଦୂରୀକରଣ କଠିନତର ହୋଇଥାଏ । ଯେଉଁ ପ୍ରକ୍ରିୟା ମାନସିକ ଭାରସାମ୍ୟ ତଥା ବ୍ୟକ୍ତିତ୍ୱ ବିକାଶରେ ବାଧା ସୃଷ୍ଟି କରେ ସେହି ପ୍ରକ୍ରିୟାକୁ ଅପସାରଣ କରିଦେଲେ ମଧ୍ୟ ଶୀଘ୍ର ମାନସିକ ଭାରସାମ୍ୟ ଫେରି ଆସେ ନାହିଁ । ଉଦାହରଣସ୍ୱରୂପ, ଧରିଯାଉ ପିଲାଟି ପାଠ ପଢ଼ାରୁ ଆନନ୍ଦ ପାଉନାହିଁ ବା

ସାଙ୍ଗ ପିଲଠାରୁ ଶୁଣି ପାଠପଢ଼ାକୁ ଭୟ କରୁଛି । ସେଥିପାଇଁ ସେ ବିଦ୍ୟାଳୟକୁ ଆସିବାକୁ ଆଗ୍ରହ ପ୍ରକାଶ କରୁନାହିଁ । ଏପରି ସ୍ଥଳେ ଶିକ୍ଷକ ତାକୁ ଅପମାନ କଲେ ବା ଦଣ୍ଡଦେଲେ ସେ ବିଦ୍ୟାଳୟ ପ୍ରତି ଅଧିକ ଭୀତତ୍ରସ୍ତ ହେବ ଏବଂ ତା ମନରେ ଶିକ୍ଷକଙ୍କ ପ୍ରତି ବିରାଗ ଭାବ ଜାତ ହେବ । ଶିକ୍ଷକଙ୍କୁ ଏଥିପାଇଁ ପିଲଟି ସାଙ୍ଗେ ଅଧିକ ସମୟ କଟାଇବାକୁ ପଡ଼ିବ । ତାକୁ ବୁଝାଇ ତା ମନରେ ପୁଣି ବିଶ୍ୱାସ ଓ ଆଗ୍ରହ ସୃଷ୍ଟି କରିବା ପାଇଁ ତାର ଅନୁଭୂତିକୁ ସୁଖଦାୟକ କରିବାକୁ ହେବ । ଶିକ୍ଷକ ଧୈର୍ଯ୍ୟବାନ୍ ହେବା ସଙ୍ଗେ, ସାଙ୍ଗ ପିଲା ଯେପରି ସେହି ପିଲଟି ପ୍ରତି ଖରାପ ବ୍ୟବହାର ନ ଦେଖାନ୍ତି, ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ତାହା ନହେଲେ ଏହାର କୁପରିଣାମ ଶିଶୁର ବ୍ୟକ୍ତିତ୍ୱ ଉପରେ ପରିଲକ୍ଷିତ ହେବ ।

ବ୍ୟକ୍ତିତ୍ୱର ବିକାଶ ପାଇଁ ଶିଶୁ ମନରେ ନିଜ ପ୍ରତି ବିଶ୍ୱାସ ତାର ଗୃହ ପାର୍ଶ୍ୱରେ ଥିବା ବୟସ୍କଲୋକଙ୍କ ପ୍ରତି ଆସ୍ଥାର ଆବଶ୍ୟକତା ରହିଛି । ବିଶ୍ୱାସ, ସ୍ନେହ ମମତା, ସଙ୍ଗେ ସଙ୍ଗେ ଶିଶୁ ଜୀବନରେ ସଫଳତା ଏବଂ ପ୍ରଶଂସାର ଗୁରୁତ୍ୱପୂର୍ଣ୍ଣ ଭୂମିକା ମଧ୍ୟ ରହିଛି । ଯେତେବେଳେ ଶିଶୁର ସର୍ବାଙ୍ଗୀନ ଉନ୍ନତି ସାଧନ ଶିଶୁର ନିଜ ସାମର୍ଥ୍ୟକୁ କେନ୍ଦ୍ରକରି ହୋଇଥାଏ ତାହା ସୁଖଦାୟକ ଓ ଅଧିକ ସଫଳତାର ସହିତ ହୋଇଥାଏ । ବ୍ୟକ୍ତିତ୍ୱ ସହିତ ସାମର୍ଥ୍ୟର କିଛି ପରିମାଣରେ ସମ୍ପର୍କ ଅନ୍ତତଃ ଶୈଶବ ସମୟରେ ଦେଖାଯାଏ । ତେବେ ମନୋବିଜ୍ଞାନୀମାନେ ବ୍ୟକ୍ତିତ୍ୱ ଓ ସାମର୍ଥ୍ୟକୁ ବ୍ୟକ୍ତିଗତ ପାର୍ଥକ୍ୟର ଦୁଇଟି ମୂଳ ଅଙ୍ଗ ଭାବରେ ବିଶ୍ଳେଷଣ କରନ୍ତି ।

## ବ୍ୟକ୍ତିତ୍ୱ ଓ ସାମର୍ଥ୍ୟ

ସାଧାରଣତଃ ବ୍ୟକ୍ତିର ବ୍ୟକ୍ତିତ୍ୱ ସାମାଜିକ ପରିସ୍ଥିତିରେ ତାର ଚିନ୍ତାଧାରା, ଭାବଭଙ୍ଗୀ ଏବଂ ବ୍ୟବହାରରୁ ଅନୁମାନ କରାଯାଏ । କେତେଜଣ ଯେ କୌଣସି ପରିସ୍ଥିତିରେ ସହଜରେ ଅନ୍ୟମାନଙ୍କ ସଙ୍ଗେ ମିଶି କଥାବାର୍ତ୍ତା କରିପାରିବାବେଳେ ଅନ୍ୟ କେତେ ଜଣ ମୁହଁ ଖୋଲି ପଦେ କଥା କହିପାରନ୍ତି ନାହିଁ । ଏହାର ଅର୍ଥ ନୁହେଁ ଯେ ସେହି ବ୍ୟକ୍ତିମାନେ କ'ଣ କହିବାକୁ ହେବ ଜାଣିନାହାନ୍ତି ବା ତାଙ୍କୁ କଥା କହି ଆସେ ନାହିଁ । ସେହିପରି କେହି କେହି ସାମାନ୍ୟ ଅସୁବିଧାରେ ବହୁତ ବିଚଳିତ ହୋଇ ପଡ଼ନ୍ତି ଅଥଚ ଅନ୍ୟ କେତେଜଣ ବିପଦରେ ମଧ୍ୟ ଧୈର୍ଯ୍ୟର ସହିତ କାମ କରିପାରନ୍ତି । ଏହା ସେମାନଙ୍କର ସ୍ୱଭାବ ବା ବ୍ୟକ୍ତିତ୍ୱର ପରିଚାୟକ ।

ମନୋବିଜ୍ଞାନୀମାନେ ବ୍ୟକ୍ତିତ୍ୱର ସଂଜ୍ଞା ବିଷୟରେ ଏକମତ ନ ହେଲେ ମଧ୍ୟ ମୋଟାମୋଟି ଭାବରେ ସାମାଜିକ ବ୍ୟବହାରର ବିଭିନ୍ନ ପ୍ରକାର ପରିପ୍ରକାଶରେ ସ୍ୱାଭାବିକ ସଙ୍ଗତିରୁ ଅନୁମେୟ ଏକ ଧାରଣା (concept) ବୋଲି ମାନି ନିଅନ୍ତି । ଏହି ଦୃଷ୍ଟିରୁ କାହାରି ବ୍ୟକ୍ତିତ୍ୱ ନାହିଁ ବୋଲି କହିବା ଠିକ୍ ହେବ ନାହିଁ । ବିଭିନ୍ନ ଦୃଷ୍ଟିକୋଣରୁ ପ୍ରତ୍ୟେକ ବ୍ୟକ୍ତିଠାରେ ବ୍ୟକ୍ତିତ୍ୱ ବିଭିନ୍ନ ପରିମାଣରେ ଥାଏ ।

ସାମର୍ଥ୍ୟ କ୍ଷେତ୍ରରେ ଅନୁରୂପ ମତାନୈକ୍ୟ ଦେଖାଗଲେ ମଧ୍ୟ ମୋଟା ମୋଟି ଭାବରେ ସାମର୍ଥ୍ୟକୁ 'କୌଣସି ସମସ୍ୟାର ସମାଧାନ କରିବାର ମାନସିକ ଶକ୍ତି' ବୋଲି ଧରାଯାଏ । ଅବଶ୍ୟ ସମସ୍ୟାର ବିଭିନ୍ନତାକୁ ନେଇ ସାମର୍ଥ୍ୟର ବିଭିନ୍ନତା ମଧ୍ୟ କଳ୍ପନା କରାଯାଏ । ଉଦାହରଣସ୍ୱରୂପ, ଜଣେ ଶିଶୁ ସହଜରେ ଅଙ୍କ ସମାଧାନ କରି ପାରିବା ବେଳେ ଅନ୍ୟ ଜଣେ ଭାଷାଗତ ସମସ୍ୟାର ସମାଧାନ କରିପାରୁଛି । ତେଣୁ ଉଭୟେ ଏକ ପ୍ରକାର ସାମର୍ଥ୍ୟର ଅଧିକାରୀ ବୋଲି ଭାବିବା ଭୁଲ୍ ହେବ । ବ୍ୟକ୍ତିତ୍ୱ ପରି ସାମର୍ଥ୍ୟ ଦୃଷ୍ଟିରୁ ପ୍ରତ୍ୟେକ ବ୍ୟକ୍ତି କିଛି ପରିମାଣରେ ସାମର୍ଥ୍ୟର ଅଧିକାରୀ ।

ବ୍ୟକ୍ତିତ୍ୱ ଓ ସାମର୍ଥ୍ୟ ମଧ୍ୟରେ ମୂଳ ପ୍ରଭେଦହେଲା ଯେ ସାମର୍ଥ୍ୟର ପରିପ୍ରକାଶରେ ମୂଳତଃ ସାମାଜିକ ପରିପ୍ରେକ୍ଷୀକୁ ଦୃଷ୍ଟିରୁ ନିଆଯାଏ ନାହିଁ । ଯଦିଓ ଅନ୍ୟମାନଙ୍କ ସଙ୍ଗେ ମିଶି ପାରିବାକୁ ଏକ ସମସ୍ୟା ବୋଲି ଧରି ନିଆଯାଇପାରେ । ଗତାନୁଗତିକତାର ଦୃଷ୍ଟିରୁ ତାହାକୁ ସାମର୍ଥ୍ୟଠାରୁ ଭିନ୍ନ ଅର୍ଥାତ୍ ବ୍ୟକ୍ତିତ୍ୱର ଅଙ୍ଗବୋଲି ଧରି ନିଆଯାଏ । ଏଣୁ ବ୍ୟକ୍ତିତ୍ୱ ସହିତ ସମାଜ ଓ ସାମାଜିକ ବ୍ୟବହାରର ଗୂଢ଼ ସମ୍ପର୍କ ରହିଅଛି ଏବଂ ଅନୁଶୀଳନ ଦୃଷ୍ଟିରୁ ଏହି ଦୁଇଟିର ମଧ୍ୟ ଗୁରୁତ୍ୱ ରହିଅଛି ।

## ବ୍ୟକ୍ତିତ୍ୱ ଓ ସାମାଜିକ ଭୂମିକାର ଅଭିନୟ

ଅନ୍ୟାନ୍ୟ ମାନସିକ ଦିଗ ଅପେକ୍ଷା ବ୍ୟକ୍ତିତ୍ୱ ବିଷୟରେ କୌଣସି ଧାରଣା କରିବା ଅଧିକ ଜଟିଳ । ଏହାର କାରଣ ପ୍ରତି ସମାଜରେ ବିଭିନ୍ନ ସମ୍ପର୍କ ଅନୁଯାୟୀ ବ୍ୟକ୍ତିର ଭୂମିକା ନିର୍ଣ୍ଣିତ ହୋଇଥାଏ । ଉଦାହରଣସ୍ୱରୂପ, 'ମା' ମମତାମୟୀ, କଷ୍ଟସହିଷ୍ଣୁ, ସ୍ୱାର୍ଥତ୍ୟାଗୀ ଏବଂ ପ୍ରେରଣା-ଦାୟିନୀ ତଥା ଆଶ୍ରୟ-ଦାୟିନୀ ଭାବରେ ଆମ ସମାଜରେ କଳ୍ପନା କରାଯାଏ । ତେଣୁ ପ୍ରତି ନାରୀ ଏହି ମାତୃତ୍ୱ ପ୍ରାପ୍ତିପରେ ଏହିପରି ବ୍ୟବହାର ଦେଖାଇ ଥାଆନ୍ତି । ଏହା ତାଙ୍କର ମମତାମୟୀ ବ୍ୟକ୍ତିତ୍ୱର ସ୍ୱରୂପ

କ ସାମାଜିକ ନିୟମ ଅନୁଯାୟୀ ଭୂମିକାରେ ଅଭିନୟ, ତାହା ହଠାତ୍ ନିର୍ଣ୍ଣୀତ କରିବା ଖୁବ୍ କଷ୍ଟକର । ଯେତେବେଳେ ଜଣେ ବ୍ୟକ୍ତି ବିଭିନ୍ନ ସ୍ଥାନରେ ବିଭିନ୍ନ ବ୍ୟକ୍ତିଙ୍କ ସହି ଭିନ୍ନ ଭିନ୍ନ ଭୂମିକାରେ ଅଭିନୟ କରେ ଅର୍ଥାତ୍ ଶିଶୁ ସଙ୍ଗେ ମା, ସ୍ୱାମୀ ସଙ୍ଗେ ସ୍ତ୍ରୀ କାର୍ଯ୍ୟକ୍ଷେତ୍ରରେ ସହକର୍ମୀଙ୍କ ସମକକ୍ଷ, ଗୃହକର ସଙ୍ଗେ ଗୃହକର୍ତ୍ତ୍ରୀର ଦାୟିତ୍ୱ ତୁଲାଏ ସେତେବେଳେ ବ୍ୟବହାରରେ ବହୁତ ପରିବର୍ତ୍ତନ ଦେଖାଯାଏ ଯାହା ବ୍ୟକ୍ତିତ୍ୱର ସଙ୍କୋର ପରିପନ୍ଥୀ, ବ୍ୟବହାରରେ ଐକ୍ୟ ଦେଖାଗଲେ ହିଁ ତାହା ବ୍ୟକ୍ତିତ୍ୱର ପରିଚାୟକ ବୋଲି ଧରାଯାଏ । ତାହା ନ ହେଲେ, ବ୍ୟକ୍ତିର ବ୍ୟବହାର, ସାମାଜିକ ପରିସ୍ଥିତି ଦ୍ୱାରା ସମ୍ପୂର୍ଣ୍ଣ ଭାବେ ନିର୍ଣ୍ଣିତ ବୋଲି ଧରି ନେବାକୁ ହେବ । ଆମେ ସମାଜର ବିଭିନ୍ନ ସଂସ୍ଥା ତଥା ନିୟମ ସହିତ ଜଡ଼ିତ ଥିବାରୁ ଆମକୁ ସେହିପରି ବ୍ୟବହାର କରିବାକୁ ପଡ଼ିଥାଏ । ଏହି ଦୃଷ୍ଟିରୁ କେତେଜଣ ସାମାଜିକ ମନୋବିଜ୍ଞାନୀ ବ୍ୟକ୍ତିତ୍ୱର କଳ୍ପନା ସହିତ ଏକମତ ହୁଅନ୍ତି ନାହିଁ । ସେମାନଙ୍କ ମତରେ ମଣିଷର ବ୍ୟବହାର ବହୁଳାଂଶରେ ସାମାଜିକ ପରିସ୍ଥିତି ଦ୍ୱାରା ହିଁ ନିର୍ଣ୍ଣିତ ।

## ପରିସ୍ଥିତି ବନାମ ବ୍ୟକ୍ତିତ୍ୱ

ପ୍ରତି ଶିଶୁ ଗୋଟିଏ ସମାଜରେ ବଢ଼ି ଯୋଗ୍ୟବ୍ୟକ୍ତି ହେବା ପାଇଁ କେତେ ପ୍ରକାର ନୀତି ନିୟମ ମାନି ଚଳିଥାଏ । ଏହି ନୀତି ନିୟମ ମାନିବା ଅର୍ଥ ମୂଳତଃ ଅନ୍ୟମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେବା । ତେଣୁ ଯେଉଁ ସ୍ଥାନରେ ସମାଜର ଦୃଢ଼ ନିୟମ ଅଛି ସେ ସ୍ଥାନରେ ବ୍ୟକ୍ତିତ୍ୱର ପାର୍ଥକ୍ୟ ଆଶା କରିବା ନିରର୍ଥକ । ବିଦ୍ୟାଳୟରେ ସମସ୍ତେ ଏକ ପ୍ରକାର ବେଶ ପରିଧାନ କରି ପାଠ ପଢ଼ିବାରେ ଲାଗିଥାନ୍ତି । ତେଣୁ ତାଙ୍କ ଭିତରୁ କିଏ ଖୁସି ବାସିଆ ବା କିଏ ଚୁପ୍‌ଚାପ ତାହା ଜାଣିବା କଷ୍ଟକର; ମାତ୍ର ଅବସର ସମୟରେ ଯଦି ଜଣେ ଚୁପ୍‌ଚାପ ବସି ଚିତ୍ର ଆଙ୍କିଲା ବା ବହି ପଢ଼ିଲା ତେବେ ସେ ଚୁପ୍‌ଚାପ ପ୍ରକୃତିର ବୋଲି ଧରିନେବା ଅପେକ୍ଷାକୃତ ଭାବେ ଯୁକ୍ତିଯୁକ୍ତ ହେବ । ସାମାଜିକ ପରିସ୍ଥିତି ନିୟମର ଦୃଢ଼ତାର ପରିବର୍ତ୍ତନ ସହି ବ୍ୟବହାରିକ ଐକ୍ୟ ବା ପାର୍ଥକ୍ୟ ଦେଖାଯାଇଥାଏ ।

ଯେଉଁ ସ୍ଥାନରେ ପରିସ୍ଥିତି ଆପାତତଃ ସମାନ ଏହି ମଧ୍ୟ ବ୍ୟବହାରରେ ପାର୍ଥକ୍ୟ ଦେଖାଯାଏ । ସେଠାରେ ବ୍ୟକ୍ତିତ୍ୱର ଅନୁଶୀଳନ କରିବା ଅଧିକ ସମୀଚୀନ ଅଟେ ।

## ବ୍ୟକ୍ତିତ୍ୱ ବିକାଶର ଉପାଦାନ

କୌଣସି ଏକ ବ୍ୟବହାରକୁ ବୁଝାଇବା ପାଇଁ ଆମେ ବ୍ୟକ୍ତିତ୍ୱ ଏବଂ ପରିସ୍ଥିତିର ସାହାଯ୍ୟ ନେଇପରି ବ୍ୟକ୍ତିତ୍ୱକୁ ବୁଝାଇବା ପାଇଁ ଆମେ ବଂଶାନୁଗତ ଗୁଣ ଏବଂ ଶିଶୁ ବଢ଼ିଥିବା ପରିସ୍ଥିତିର ସାହାଯ୍ୟ ନେଉ । ଅର୍ଥାତ୍ ଜଣେ ଶିଶୁର ବ୍ୟକ୍ତିତ୍ୱ କିପରି ହେବ ତାହା ତାର ବଂଶାନୁଗତ ଗୁଣ ଦ୍ୱାରା ପ୍ରଭାବିତ କି ଯେଉଁ ପରିସ୍ଥିତିରେ ବଢ଼ି ଆସିଅଛି । ତା ଦ୍ୱାରା ଅଧିକ ପ୍ରଭାବିତ ସେ ବିଷୟରେ ଦ୍ୱିମତ ଦେଖାଯାଏ । ସାଧାରଣତଃ ବଂଶାନୁଗତ ଗୁଣର ଅବତାରଣା କଲାବେଳେ ଆମେ କୌଣସି ଅପରିବର୍ତ୍ତନୀୟ ଗୁଣ ବିଷୟରେ କଳ୍ପନା କରିଥାଉଁ । ଉଦାହରଣସ୍ୱରୂପ—ବୟସ୍କ ବ୍ୟକ୍ତିର ଉଚ୍ଚତା, ଦେହର ରଙ୍ଗ ଇତ୍ୟାଦି ଏଠାରେ ସୂଚାଇ ଦିଆଯାଇପାରେ ଯେ କୌଣସି ଖାଦ୍ୟ, ବ୍ୟାୟାମ ବା ପରିଶ୍ରମ ବୟସ୍କ ବ୍ୟକ୍ତିର ଉଚ୍ଚତା ବୃଦ୍ଧିରେ ସାହାଯ୍ୟ କରିବାର ପ୍ରମାଣ ନାହିଁ । ତେଣୁ ଏହା ବଂଶାନୁଗତ ଗୁଣ ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ପ୍ରଭାବିତ ବୋଲି ଧରି ନିଆଯାଏ । ଅପର ପକ୍ଷରେ କେଉଁ ଶିଶୁ କେଉଁ ଭାଷାରେ କଥାବାର୍ତ୍ତା କରିପାରୁଛି ତାହା ସମ୍ପୂର୍ଣ୍ଣ ଭାବେ ସମାଜରେ ବ୍ୟବହୃତ ଭାଷାଦ୍ୱାରା ହିଁ ନିର୍ଣ୍ଣୀତ । ବ୍ୟକ୍ତିତ୍ୱ ସମ୍ପର୍କରେ ଆଲୋଚନା କଲାବେଳେ କୌଣସି ଏକ ନିର୍ଦ୍ଦିଷ୍ଟ ଉପାଦାନ ଯେ ସମ୍ପୂର୍ଣ୍ଣ ଭାବେ ବ୍ୟକ୍ତିତ୍ୱ ନିର୍ଣ୍ଣୟ କରେ ତାହା କହିବା ଠିକ୍ ନୁହେଁ । ବିଭିନ୍ନ ଦୃଷ୍ଟିକୋଣ ନେଇ ଭିନ୍ନ ଭିନ୍ନ ଅନୁମାନ କରାଯାଏ । ତେଣୁ ବଂଶାନୁଗତ ଗୁଣ ତଥା ପରିସ୍ଥିତି ବିଷୟରେ ଧାରଣା ରହିବା ଆବଶ୍ୟକ ।

## ବଂଶାନୁଗତ ଗୁଣ

ପ୍ରତି ମଣିଷର ଶରୀର କ୍ଷୁଦ୍ରତମ ଜୀବକୋଷର ସମଷ୍ଟିରେ ସୃଷ୍ଟି । ଏହି ଜୀବକୋଷର ନାଭିକେନ୍ଦ୍ର ମଧ୍ୟରେ ଜୀନ୍ ଅବସ୍ଥିତ । ଜୀନ୍‌ଗୁଡ଼ିକ ମଣିଷ ଶରୀରର କ୍ରମବୃଦ୍ଧି ଓ ବିକାଶର ମୂଳ ପିଣ୍ଡ ବୋଲି ଜୀନ୍ ବିଜ୍ଞାନୀମାନେ ମତପ୍ରକାଶ କରିଥାନ୍ତି । କେତୋଟି ନିର୍ଦ୍ଦିଷ୍ଟ ଗୁଣଧାରୀ ଜୀନ୍‌ରେ ପରିବର୍ତ୍ତନ ଆଣି ତାର ପ୍ରତିକ୍ରିୟାସ୍ୱରୂପ ବ୍ୟବହାରରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଇ ଏହି ମତପ୍ରକାଶ କରାଯାଇଅଛି । ଶିଶୁ-ମାନଙ୍କ କ୍ଷେତ୍ରରେ ମଧ୍ୟ ପରୀକ୍ଷାଦ୍ୱାରା ଏହା ପ୍ରମାଣିତ ହୋଇଅଛି; କିନ୍ତୁ ଏହି ପଦ୍ଧତିରେ ଗାଈର କ୍ଷୀର ଉତ୍ପାଦନ ବଢ଼ାଇବା ଏବଂ ବ୍ୟକ୍ତିର ବ୍ୟକ୍ତିତ୍ୱର କୌଣସି ଏକ ଅଂଶ ବଢ଼ାଇବା ମଧ୍ୟରେ ବହୁତ ପାର୍ଥକ୍ୟ ରହିଛି । ବ୍ୟକ୍ତିର ବ୍ୟକ୍ତିତ୍ୱକୁ ମଧ୍ୟ

ସାମାଜିକ ମନୋବିଜ୍ଞାନୀମାନେ ସମାଲୋଚନା କରୁଛନ୍ତି । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ଶିଶୁର ଶାରୀରିକ ଗୁଣ ଯଥା—ଉଚ୍ଚତା, ଦେହର ରଙ୍ଗ ଇତ୍ୟାଦି ଜୀନ୍ ଦ୍ୱାରା ପ୍ରଭାବିତ ନୁହେଁ । ଏତଦ୍‌ବ୍ୟତୀତ ଜନ୍ମ ସମୟରେ ଶିଶୁ ଶିଶୁ ମଧ୍ୟରେ ବ୍ୟବହାରଗତ ପାର୍ଥକ୍ୟ ମଧ୍ୟ ଦେଖାଯାଏ । କେଉଁ ଶିଶୁ ବେଶୀ କାନ୍ଦେ କିଏ ଚୁପ୍‌ଚାପ ରହେ । କାହାର ପ୍ରତିକ୍ରିୟା ଶୀଘ୍ର ହେଲାବେଳେ ଆଉ କାହାର ପ୍ରତିକ୍ରିୟା ନ ଥାଏ । ଶିଶୁର ଶାରୀରିକ ସାମର୍ଥ୍ୟ ବୃଦ୍ଧି ସଙ୍ଗେ ବ୍ୟବହାରରେ ପାର୍ଥକ୍ୟ ଆହୁରି ଅଧିକ ଭାବରେ ଦେଖାଯାଏ । ଏହି ସମୟରେ ସମାଜର ନିୟମ ଶୃଙ୍ଖଳା କଡ଼ାକଡ଼ି ଭାବରେ ଶିଶୁ ପ୍ରତି ଲାଗୁ କରାଯାଏ ନାହିଁ । ତେଣୁ ବ୍ୟବହାରିକ ପାର୍ଥକ୍ୟ ମୂଳତଃ ଜୀନ୍ ଦ୍ୱାରା ପ୍ରଭାବିତ ବୋଲି ଧାରଣା ସୃଷ୍ଟି ହୁଏ । ତେଣୁ ବଂଶାନୁଗତ ଗୁଣକୁ ଭଲଭାବେ ବୁଝିବା ଉଚିତ୍ ।

ମାତୃ ଗର୍ଭରେ ଶିଶୁଟି ଦଶମାସ ରହିଲେ ମଧ୍ୟ ଉଭୟ ପିତା ଓ ମାତାଙ୍କର ଶିଶୁଠାରେ ବଂଶାନୁଗତ ଗୁଣ ସୃଷ୍ଟି କରିବାରେ, ସମାନ ଅବଦାନ ରହିଛି । ପିତା ଗୁଣର ଅଧା ସହିତ ମାତା ଗୁଣର ଅଧାର ସମଷ୍ଟିରେ ଶିଶୁର ସୃଷ୍ଟି । ଏହା ସତ୍ତ୍ୱେ ଯେଉଁ ଜୀନ୍‌ର ଗୁଣ ଜୋର୍‌ଦାର (dominant) ତାହା ଅନ୍ୟ ଜୀନ୍‌ର ଗୁଣକୁ ପ୍ରଭାବିତ କରି ପ୍ରକାଶିତ ହୁଏ; ମାତ୍ର ଏହା ଇଚ୍ଛାକୃତ ନୁହେଁ । ଶିଶୁର ସାମର୍ଥ୍ୟ ବା ଅସାମର୍ଥ୍ୟ ପାଇଁ କାହାରିକୁ ଦାୟୀ କରାଯାଇ ନପାରେ । ଶିଶୁଟି ଠିକ୍ ଭଳି ହେବ ତାହା କହିବା ଖୁବ୍ କଷ୍ଟକର । ତେବେ ଶିଶୁଟି ଝିଅ ହେବ ବା ପୁଅ ହେବ ତାହା ନିର୍ଭୁଲ ଭାବରେ ଆଗରୁ ଜଣାପଡ଼ୁଛି ।

ଆଇଜେଙ୍କ ପରି ମନୋବିଜ୍ଞାନୀ ଅନ୍ୟ ଏକ ପ୍ରକାର ଗବେଷଣା କରି ଜୀନ୍‌କୁ ବ୍ୟକ୍ତିତ୍ୱ ନିର୍ଣ୍ଣୟର ମୂଳ ଉପାଦାନ ବୋଲି ଦୃଢ଼ ମତ ଦିଅନ୍ତି । ବିଭିନ୍ନ ପରିସ୍ଥିତିରେ ବଢ଼ିଥିବା ଏକ ବଂଶଗତ ଗୁଣଧାରୀ ଯମଜ ସନ୍ତାନ ମଧ୍ୟରେ ଥିବା ବ୍ୟବହାରିକ ସାମଞ୍ଜସ୍ୟକୁ ଆଖି ଆଗରେ ରଖି ସେ ଏହି ମତ ପ୍ରଦାନ କରନ୍ତି । ପରିସ୍ଥିତି ବହୁ ଜଟିଳ ପରିବର୍ତ୍ତନୀୟତାକୁ ନେଇ ଗଠିତ । ତେଣୁ ସବୁ ପରିସ୍ଥିତିରେ ସବୁ ପ୍ରକାର ବ୍ୟବହାରରେ ସାମଞ୍ଜସ୍ୟ ବା ପାର୍ଥକ୍ୟ ଆଣିବା ସମ୍ଭବପର ନୁହେଁ । ପ୍ରକୃତ ପକ୍ଷେ ପରିସ୍ଥିତିର ଏହି ପୃଥକ୍ ଗୁଣର ନିରୂପଣ ଏବଂ ବ୍ୟବହାର ଉପରେ ସେଗୁଡ଼ିକର ପ୍ରଭାବ ହିଁ ମନୋବିଜ୍ଞାନର ଅନ୍ୟତମ ମୂଳ ଉପଜୀବ୍ୟ । ତେଣୁ ପରିସ୍ଥିତିକୁ

ହେଉଥିଲା ନ କରିବା କୌଣସି ବ୍ୟବହାରକୁ (ମୂଳତଃ ସାମାଜିକ) ଅପରିବର୍ତ୍ତନୀୟ ବୋଲି ମନେକରି ତାର ପ୍ରକୃଷ୍ଟ ଅନୁଶୀଳନ କରିବା ଆବଶ୍ୟକ ।

## ପରିସ୍ଥିତି

ଶିଶୁ ଯେଉଁ ପରିସ୍ଥିତି ମଧ୍ୟ ଦେଇ ପ୍ରାପ୍ତ ବୟସ୍କ ବ୍ୟକ୍ତିରେ ପରିଣତ ହୁଏ ତାର ପ୍ରତିଫଳନ ଅଳ୍ପବହୁତେ ଶିଶୁର ବ୍ୟକ୍ତିତ୍ୱ ଉପରେ ଦେଖା ଦେଇଥାଏ । ଅନ୍ୟ ଯେ କୌଣସି ଶିଶୁ ଅପେକ୍ଷା ମଣିଷ ଶିଶୁର ଶୈଶବ ସବୁଠାରୁ ଦୀର୍ଘ ସମୟ ବ୍ୟାପୀ । ଏହି ସମୟ ମଧ୍ୟରେ ସେ ବଞ୍ଚିବା ପାଇଁ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ ହୋଇଥାଏ । ସେ ପିତାମାତା, ବନ୍ଧୁବାନ୍ଧବ, ଶିକ୍ଷକ ତଥା ସାଥୀମାନଙ୍କର ନିର୍ଦ୍ଦେଶ ମାନି ଚାଲିଥାଏ । ଭାଷାର ବିକାଶ ଦ୍ୱାରା ସେ ଏହି ନିର୍ଦ୍ଦେଶଗୁଡ଼ିକ ଅପେକ୍ଷାକୃତ ଭାବେ ଶୀଘ୍ର ବୁଝିପାରେ ଏବଂ ବାସ୍ତବରେ ବହୁପ୍ରକାର ସାମାଜିକ ରୀତିନୀତି, ଭାବଭଙ୍ଗୀ ତଥା ଚଳଣିଧାରା ପ୍ରତି ସଚେତନ ହୁଏ । ଏହି ସମୟରେ ବ୍ୟବହାରର ବିକାଶ ଔଚିତ୍ୟ ଉପରେ ପର୍ଯ୍ୟବସିତ ନ ହୋଇ ଫଳାଫଳ ଉପରେ ନିର୍ଭରଶୀଳ ହୋଇଥାଏ । ଅର୍ଥାତ୍ କୌଣସି ବ୍ୟବହାର ଦେଖାଇବା ଠିକ୍ ନୁହେଁ ବୋଲି ଶିଶୁଟି ଭାବିବା କଷ୍ଟକର ହୁଏ; ମାତ୍ର କୌଣସି ବ୍ୟବହାର ଦେଖାଇଲେ ଯେ ସେଥିପାଇଁ ଦଣ୍ଡ ବା ପୁରସ୍କାର ମିଳିବ ସେ ବିଷୟରେ ଶିଶୁଟି ସଚେତନ ହୁଏ । ପୁରସ୍କାର ପାଇଲେ ଶିଶୁଟି ସେହି ବ୍ୟବହାର ଦେଖାଇବାକୁ ଇଚ୍ଛା କରେ ବା ଶିକ୍ଷା କରେ । ଏହି ସମୟରେ ପୁରସ୍କାର ବା ପୁନର୍ବଳନ ଦ୍ୱାରା ବିଭିନ୍ନ ପ୍ରକାର ବ୍ୟବହାର ଶିକ୍ଷା ଦିଆଯାଇପାରେ ଏବଂ ଏହି ପୁନର୍ବଳନର ଅପସାରଣ ଦ୍ୱାରା ଅସାମାଜିକ ବ୍ୟବହାରକୁ ମଧ୍ୟ ବନ୍ଦ କରାଯାଇପାରେ । ଦୁର୍ଭାଗ୍ୟବଶତଃ ଠିକ୍ ବ୍ୟବହାର ନ ଦର୍ଶାଇ କେବଳ ଦଣ୍ଡଦ୍ୱାରା ଭୁଲ୍ ବ୍ୟବହାରର ଦୂରୀକରଣ ଶିକ୍ଷକ ତଥା ପିତାମାତା-ମାନେ ସହଜ ବୋଲି ଧରି ନିଅନ୍ତି । ଯାହା ଫଳରେ ସେମାନେ ବ୍ୟାବହାରିକ ପରିବର୍ତ୍ତନ ଆଣି ନ ପାରି ତାହା ଏକ ଅପରିବର୍ତ୍ତନୀୟ ବଂଶାନୁଗତ ଗୁଣ ବୋଲି ଧରି ନିଅନ୍ତି । ଶିଶୁର ମାନସିକ ଅଭିବୃଦ୍ଧି ତଥା ଭାଷାଗତ ଦକ୍ଷତା ବୃଦ୍ଧି ସଙ୍ଗେ ସଙ୍ଗେ ଉଚିତ ଅନୁଚିତର କଳ୍ପନା ଆସିଥାଏ । ପୁନର୍ବଳନ ଦ୍ୱାରା ସଂଗଠିତ ବ୍ୟବହାରଗୁଡ଼ିକ ଏହା ଦୃଢ଼ କରେ । ଏହି ଉଚିତ ଅନୁଚିତର କଳ୍ପନା ମଧ୍ୟ ବିଭିନ୍ନ ନିର୍ଦ୍ଦେଶ ଦ୍ୱାରା ପ୍ରଭାବିତ ହୁଏ ।

ଏହିସବୁ ଲକ୍ଷଣକୁ ମାନି ନେଇ ଫ୍ରଏଡ୍‌ଙ୍କଠାରୁ ଆରମ୍ଭ କରି ବହୁ ବିଶିଷ୍ଟ ମନୋବିଜ୍ଞାନୀ ଶୈଶବର ଅନୁଭୂତିକୁ ଭବିଷ୍ୟତର ବ୍ୟକ୍ତିତ୍ୱ ଗଠନ କରିବାର ମୂଳ ଉପାଦାନ ବୋଲି ଧରି ନିଅନ୍ତି । ଶିଶୁର ବିକାଶ ଯେଉଁ ସ୍ତର ମଧ୍ୟ ଦେଇ ଗତି କରେ ପ୍ରତି ସ୍ତରରେ ସେ ଉପଯୋଗୀ ନିର୍ଦ୍ଦେଶ ତଥା ଅନୁଭୂତି ନ ପାଇଲେ ତାର ବ୍ୟକ୍ତିତ୍ୱର ସେହି ଅଂଶର ବିକାଶ ବାଧାପ୍ରାପ୍ତ ହୁଏ । ଉଦାହରଣସ୍ୱରୂପ—ଶିଶୁଟିର ସାମାଜିକ ବ୍ୟବହାର ୨।୩ ବର୍ଷ ସମୟରୁ ନ ବଢ଼ିଲେ ଭବିଷ୍ୟତରେ ଶିଶୁଟି ସହଜରେ ଅନ୍ୟମାନଙ୍କ ସଙ୍ଗେ ମିଶିବାରେ ଅକ୍ଷମତା ପ୍ରକାଶ କରେ । କ୍ରମଶଃ ସେ ସାମାଜିକ ପ୍ରତିଯୋଗିତାଠାରୁ ଦୂରେଇ ରହିବା ପାଇଁ ଭଲ ପାଏ ଏବଂ ତାହା ତାର ବ୍ୟକ୍ତିତ୍ୱ ଭାବରେ ପ୍ରତିଫଳିତ ହୁଏ । ଥରେ ବ୍ୟକ୍ତିତ୍ୱର ଅଂଶ ହେଲାପରେ ତାର ପରିବର୍ତ୍ତନ କଠିନତର ହୁଏ । ଏହାର ଅନ୍ୟତମ କାରଣ ହେଲା ଯେ କୌଣସି ବ୍ୟକ୍ତିର ନିଜତ୍ୱ ପରିବର୍ତ୍ତନ ତାହାର 'ଅହଂ ବା ମୁଁ' ପରିକଳ୍ପନାର ପରିବର୍ତ୍ତନ । ଏହା ସାଧାରଣତଃ ବ୍ୟକ୍ତିମାନଙ୍କ ପାଇଁ ଗ୍ରହଣୀୟ ହୋଇ ନ ଥାଏ । ତେଣୁ ଯେ ପର୍ଯ୍ୟନ୍ତ ବ୍ୟବହାର ବ୍ୟକ୍ତିତ୍ୱର ଏକ ସ୍ଥାୟୀ ଅଂଶ ନ ହୋଇଛି ଅର୍ଥାତ୍ ମଣିଷ ଶିଶୁ ଅବସ୍ଥାରେ ଅଛି ସେତେବେଳେ ଏହି ବ୍ୟବହାରର ପରିବର୍ତ୍ତନ ତଥା ଶିକ୍ଷା ଅପେକ୍ଷାକୃତଭାବେ ସହଜ ହୋଇଥାଏ । ଏହି ଦୃଷ୍ଟିରୁ ଆଗରୁ ବୁଢ଼ାବାପା ବା ଅଜାମାନେ ନାତିନାତୁଣୀ-ମାନଙ୍କୁ ଶିଶୁ ବୟସରେ ମହାପୁରୁଷମାନଙ୍କ ଜୀବନୀ, ପୁରାଣ ଓ ଅନ୍ୟାନ୍ୟ ଧର୍ମ କାହାଣୀ ସବୁ ଶୁଣାଉଥିଲେ । ଶିବାଜୀ, ଗାନ୍ଧିଜୀ, ପ୍ରଭୃତି ଜନନାୟକମାନେ ତାଙ୍କ ମା'ଙ୍କଠାରୁ ଉପଦେଶ ଶୁଣି ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ଶୈଶବରେ ଯେ ଶିଶୁର ବ୍ୟକ୍ତିତ୍ୱ ବିକାଶ ପାଇଁ ଅନୁକୂଳ ପରିସ୍ଥିତିର ଏକ ବିଶିଷ୍ଟ ଅବଦାନ ଅଛି ତାହା ମନୋବୈଜ୍ଞାନିକ ଦୃଷ୍ଟିରୁ ସହଜରେ ଉପଲବ୍‌ଧ କରି ହୁଏ ।

## ପିଲାର ବ୍ୟକ୍ତିତ୍ୱ ବିକାଶରେ ସାହାଯ୍ୟ

ପ୍ରଥମତଃ ଶିଶୁ ମନରେ ନିଜ ପ୍ରତି ଏକ ଉଚ୍ଚ ଧାରଣା ସୃଷ୍ଟି କରାଯିବା ଉଚିତ । ଏହି ଧାରଣା ବଦ୍ଧମୂଳ ହେବାପାଇଁ ବିଭିନ୍ନ ସମୟରେ ଏବଂ ବିଭିନ୍ନ କ୍ଷେତ୍ରରେ ଶିଶୁର ବ୍ୟବହାରକୁ ପୁନର୍ବଳନ ଦ୍ୱାରା ଦୃଢ଼ କରାଯିବା ଉଚିତ । ଅନେକ ସମୟରେ ଶିଶୁଟି ଅଜ୍ଞାନତାବଶତଃ ବା ସ୍ୱେଚ୍ଛାକୃତ ଭାବରେ କେତେକ ବ୍ୟବହାର

ଦେଖାଇଥାଏ ଯାହା ଗ୍ରହଣୀୟ ହୁଏ ନାହିଁ । ସେହି ସମୟରେ ପିତାମାତା ଏବଂ ଶିକ୍ଷକମାନେ ପିଲାଟିକୁ 'ଦୁଷ୍ଟ' ବୋଲି କହିଥାନ୍ତି । ଏଥିରେ ଶିଶୁର ମନରେ ବିଦ୍ରୋହୀ ଭାବ ଜାଗ୍ରତ ହୁଏ । କାରଣ ଏହି 'ଦୁଷ୍ଟ' ଆଖ୍ୟା ଦ୍ୱାରା ଆମେ ପିଲାଟିର ସମସ୍ତ ବ୍ୟବହାରକୁ ଏକାକାର କରିଦେଉଁ । ତାହାଛଡ଼ା ପିଲାର ସାଙ୍ଗମାନେ ମଧ୍ୟ ତାକୁ 'ଦୁଷ୍ଟ' ବୋଲି ଚିଡ଼ାଇବା ଆରମ୍ଭ କରି ଦିଅନ୍ତି । ଏହାର ପରିଣାମ ଆଦୌ ଗ୍ରହଣୀୟ ନୁହେଁ । ଅତି ଅଳ୍ପ ବୟସରୁ ମଧ୍ୟ ପିଲାମାନେ ବ୍ୟବହାର ଏବଂ ନିଜ ମଧ୍ୟରେ ପାର୍ଥକ୍ୟ ଦେଖିପାରନ୍ତି । 'ମୁଁ ନିଜେ ଖରାପ ନୁହେଁ, ମୁଁ ଯାହା କଲି ତାହା ଖରାପ ।' ଦୁଇ ତିନି ବର୍ଷର ପିଲାମାନେ ଏଭଳି କହିବାର ଦୃଷ୍ଟାନ୍ତ ଅଛି । ତେଣୁ ବ୍ୟବହାର ମାର୍ଜିତ କରିବା ସମୟରେ ଶିଶୁଟିକୁ ସେହିଭଳି ନିର୍ଦ୍ଦେଶ ଦେବା ଉଚିତ । ତୁମେ ଭଲ ପିଲା, ତୁମେ ଆଉ ଏମିତି କରିବ ନାହିଁ, କହିବା ଅନେକ ଗୁଣରେ 'ତୁମେ ଦୁଷ୍ଟ ପିଲା, ତୁମେ ଏପରି କଲେ ଦଣ୍ଡ ପାଇବ' କହିବାଠାରୁ ଶ୍ରେୟସ୍କର । ପ୍ରଥମରେ ପିଲାଟି ମନରେ ଭଲ ପିଲା ହେବାର ଆବଶ୍ୟକତା ବଢ଼ିବ ଏବଂ ଦ୍ୱିତୀୟରେ, ସେ ଏ ଭଳି କାର୍ଯ୍ୟ ଆଉ କରିବାକୁ ଇଚ୍ଛା କରିବ ନାହିଁ । ତୃତୀୟରେ, ଏ ଭଳି କହୁଥିବା ବ୍ୟକ୍ତି ପ୍ରତି ତାର କୌଣସି ରାଗ ବା ବିଦ୍ୱେଷ ରହିବ ନାହିଁ । ତେଣୁ ପରେ ସେହି ବ୍ୟକ୍ତିଠାରୁ ନିର୍ଦ୍ଦେଶ ଗ୍ରହଣ କରିବା ସହଜ ହେବ ।

ନିଜ ପ୍ରତି ଉତ୍ତମ ଧାରଣା ଥିବା ବ୍ୟକ୍ତିର ବ୍ୟବହାର ସମାଜ ପ୍ରତି ଅନୁକୂଳ ହୋଇଥାଏ । କେବଳ ଯେଉଁମାନଙ୍କର ସାମର୍ଥ୍ୟ ଥାଏ ସେମାନଙ୍କର କ୍ଷେତ୍ରରେ ଏହା ସମ୍ଭବ ବୋଲି କହିବା ଠିକ୍ ନୁହେଁ । ଯେଉଁମାନଙ୍କର ସାମର୍ଥ୍ୟ ନ ଥାଏ ସେମାନେ ମଧ୍ୟ ଉପଯୁକ୍ତ ବ୍ୟକ୍ତିତ୍ୱ ମାଧ୍ୟମରେ ଅନ୍ୟମାନଙ୍କର ପ୍ରଶଂସା ତଥା ସମ୍ମାନର ପାତ୍ର ହୋଇପାରନ୍ତି । ନିଜର ଆତ୍ମବିଶ୍ୱାସ, ଚେଷ୍ଟା ଏବଂ ସାହାଯ୍ୟ ଦ୍ୱାରା ସେମାନେ ବେଶ୍ କିଛି ଉପଲବ୍ଧି କରିପାରନ୍ତି । ତେଣୁ ଶିଶୁ ବୟସରୁ ତାର ନିଜ ପ୍ରତି ଅନୁକୂଳ ମନୋବୃତ୍ତି ପ୍ରକାଶ କରିବା ଆବଶ୍ୟକ । ଏଥିରେ ଶିକ୍ଷକ ତଥା ପିତାମାତାଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ ।

ଦ୍ୱିତୀୟତଃ, ଶିଶୁର ବ୍ୟକ୍ତିତ୍ୱ ବିକାଶରେ ତାର ସହଯୋଗୀ ମନୋଭାବ ବିଶେଷ ସାହାଯ୍ୟ କରେ । ଖେଳ ମାଧ୍ୟମରେ ଏହା ଅତି ସହଜ ଭାବରେ ଶିକ୍ଷା ଦିଆଯାଇପାରେ । ମିଳିମିଶି ଖେଳ ଖେଳିବା, ଅପେକ୍ଷାକୃତ ଭାରି ଜିନିଷ ଉଠାଇ

ନେବା ଇତ୍ୟାଦି କାର୍ଯ୍ୟକଳାପ ଦ୍ୱାରା ଶିଶୁର ସହଯୋଗୀ ମନୋବୃତ୍ତି ବୃଦ୍ଧିପାଏ । ଶିଶୁମାନଙ୍କର ପରସ୍ପର ପ୍ରତି ସାଧାରଣତଃ ଶ୍ରଦ୍ଧାଭାବ ଥିଲେ ମଧ୍ୟ ଖେଳିବା ସମୟରେ କଳଗୋଳ ବା ମାଡ଼ ମରାମରି ହୋଇଥାଆନ୍ତି । ଏହି ସମୟରେ ଶିକ୍ଷକ ତାହାକୁ ଦଣ୍ଡ ନ ଦେଇ ସାଙ୍ଗ ହୋଇ ପୁଣି ଖେଳିବା ପାଇଁ ପ୍ରବର୍ତ୍ତାଇଲେ ତାହା ବିଶେଷ ଉପକାରୀ ହୋଇଥାଏ । ଯଦି ଏ ସବୁ ସତ୍ତ୍ୱେ ପିଲମାନେ ସାଙ୍ଗ ହୋଇ ନ ଖେଳନ୍ତି ତେବେ ଦୁଇଜଣଙ୍କୁ ସାମନା କରି ପରସ୍ପରକୁ ଦୁଃଖିତ (sorry) ବୋଲି କହିବା ଏବଂ ସାଥୀ ହୋଇ ଖେଳିବାକୁ କହିଲେ ଶିଶୁମାନେ ପ୍ରାୟ ସବୁବେଳେ କଥା ମାନିଥାନ୍ତି । ସେଥିଲାଗି ଶିଶୁକୁ ଦଣ୍ଡ ନ ଦେଇ ତାର ହୃଦୟକୁ ହିଁ ଧୈର୍ଯ୍ୟ ଓ ସ୍ନେହର ସହିତ ଜୟ କରିବା ଉଚିତ୍ ।

ତୃତୀୟ ଗୁରୁତ୍ୱପୂର୍ଣ୍ଣ ଅଂଶଟି ହେଲା ନିଜର ସୁବିଧା ଅସୁବିଧା ବା ଜାଣିବାର ଇଚ୍ଛାକୁ ପ୍ରକାଶ କରିବା । ଶିଶୁ ଭାଷାଗତ ଦକ୍ଷତା ପାଇବା ଆଗରୁ ମଧ୍ୟ ନିଜର ଭାବ ପ୍ରକାଶ କରିଥାଏ । ବିଭିନ୍ନ ମାଧ୍ୟମରେ, ଯଥା—କାନ୍ଦିବା ବା ଇଙ୍ଗିତ କରିବା ଇତ୍ୟାଦି । ଏଥିରେ ଅନ୍ୟ ବ୍ୟକ୍ତିର ଦାୟିତ୍ୱ ହେଲା ସେ ସେ ଶିଶୁର କାନ୍ଦ ବା ଇଙ୍ଗିତର ଅର୍ଥ ବୁଝିବା ଏବଂ ତାର ଉପଯୁକ୍ତ ପଦକ୍ଷେପ ନେବା; ମାତ୍ର ବୟସ ବଢ଼ିବା ସଙ୍ଗେ ସଙ୍ଗେ ପ୍ରତି ଶିଶୁ ନିଜର ଭାବ ସ୍ପଷ୍ଟ ଭାବେ ପ୍ରକାଶ କରିବାକୁ ଶିଖେ କରେ । ଏହା ତାର ବ୍ୟକ୍ତିତ୍ୱ ବିକାଶରେ ସାହାଯ୍ୟ କରେ । ପ୍ରାକ୍ ବିଦ୍ୟାଳୟ ଶିକ୍ଷା ଏହାକୁ ହିଁ ବିଶେଷ ଭାବରେ ବୁଝାଏ ।

ଏହି ଭାବର ସ୍ପଷ୍ଟ ପରିପ୍ରକାଶ, ପରେ ପାଠ ପଢ଼ିବା ଓ ଲେଖିବାରେ ମଧ୍ୟ ସାହାଯ୍ୟ କରେ । ଶିଶୁର ଭାବଭଙ୍ଗୀ, କଥାବାର୍ତ୍ତାରେ ଭୁଲ୍ ଭଟକା ରହିଲେ ତାକୁ ଥଟ୍ଟା ନ କରି ବା ଗେହ୍ଲାରେ ପ୍ରଶ୍ରୟ ନ ଦେଇ, ଉପଯୁକ୍ତ ଉଦାହରଣ ଦ୍ୱାରା ସଂଶୋଧନ କରିବା ଉଚିତ୍ । ଉଦାହରଣସ୍ୱରୂପ, ଯଦି ପିଲଟି ଦୌଡ଼ି ଯାଉଁ ଯାଉଁ ପଡ଼ିଯାଇ କାନ୍ଦିବା ଆରମ୍ଭ କଲା ତେବେ ତାକୁ ଆଗ ପାଖକୁ ଆଉଜାଇ ନେଇ କାନ୍ଦ ବନ୍ଦ କରିବାକୁ କୁହାଯିବ । ତା'ପରେ ତାକୁ ଦଉଡ଼ିବା ବେଳେ ସାବଧାନ ହୋଇ ଦଉଡ଼ିବା ପାଇଁ ନିର୍ଦ୍ଦେଶ ଦେବ । ତା ନ କରି ଚଟାଣକୁ ଦୁଷ୍ଟ ବୋଲି ମାରିବା ବା ଖାଲି କୁଣ୍ଢେଇ ଧରିବା ଦ୍ୱାରା ପିଲଟି କାନ୍ଦିବା ହିଁ ଶିକ୍ଷା କରେ । ତା'ପରେ ତାକୁ ଗୋଡ଼ର କେଉଁ ସ୍ଥାନରେ କଷ୍ଟ ହେଉଛି ସେ କଥା ସ୍ପଷ୍ଟ କହିବା ପାଇଁ

ଉପଦେଶ ଦେବା ଉଚିତ୍ । ଏଭଳି ହେଲେ ଶିଶୁ ତାର ପୂର୍ବ ସ୍ୱାର୍ଥବିକ୍ ଛାଡ଼ି ନିଜକୁ ପରିପ୍ରକାଶ କରିବାକୁ ଚେଷ୍ଟା କରିବ । ସେହିପରି ବହି ବା ଖେଳନା ଅନ୍ୟଠାରୁ ଛଡ଼ାଇ ନ ନେଇ ମାଗିବା ଶିକ୍ଷା କରିବ ଏବଂ ଅପେକ୍ଷା କରିବା ମଧ୍ୟ ଶିକ୍ଷା କରିବ । ଧାଡ଼ିରେ ଠିଆ ହେବା ଏବଂ ଅନ୍ୟର ଅଧିକାର ପ୍ରତି ସମ୍ମାନ ଦେବା ଏହି ଶିକ୍ଷାର ପରବର୍ତ୍ତୀ ପ୍ରତିଫଳନ ।

ଏହିପରି ବିଶ୍ଳେଷଣରୁ ସ୍ପଷ୍ଟ ଦେଖାଯାଏ ଶିଶୁର ବ୍ୟକ୍ତିତ୍ୱ ବିକାଶ ପାଇଁ ପ୍ରାକ୍ ବିଦ୍ୟାଳୟ ସ୍ତରରେ ଶିକ୍ଷକ ଓ ପିତାମାତାଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ ଏବଂ ସେମାନେ ଏହାକୁ ସୁସ୍ଥୁରୂପେ ତୁଲାଇବା ଉଚିତ୍ ।



# ତୃତୀୟ ଅଧ୍ୟାୟ

## ଶିଶୁ ଓ ତାର ଶିକ୍ଷା

**ଶିକ୍ଷାର ସଂଜ୍ଞା**

ଶିକ୍ଷା ଅତି ପ୍ରାଚୀନ । ଏହା ମାନବ ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ବିଭିନ୍ନ ସମୟରେ ପ୍ରାଚ୍ୟ ତଥା ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଦ୍ୱାରା ଶିକ୍ଷାର ସଂଜ୍ଞା ସ୍ଥିର କରାଯାଇଛି । ପ୍ରତ୍ୟେକେ ନିଜ ନିଜର ଅନୁଭୂତି ଅନୁସାରେ ଶିକ୍ଷାର ଭିନ୍ନ ଭିନ୍ନ ସଂଜ୍ଞା ନିର୍ଣ୍ଣୟ କରିଛନ୍ତି । ତେବେ ବିଭିନ୍ନ ଦୃଷ୍ଟିକୋଣରୁ ଶିକ୍ଷାର ସଂଜ୍ଞା ନିର୍ଣ୍ଣୟ କରିଥିବାରୁ ପ୍ରୟୋଗ କ୍ଷେତ୍ରରେ ଶିକ୍ଷାର ଅର୍ଥ ଭିନ୍ନ ଭିନ୍ନ ହୋଇଛି । ପିତାମାତା, ଶିକ୍ଷକ, ରାଜନୀତିଜ୍ଞ ଏବଂ ଧର୍ମଯାଜକମାନେ ସେମାନଙ୍କ ଦୃଷ୍ଟିକୋଣରୁ ଶିକ୍ଷାର ଅର୍ଥକୁ ବିଚାରକୁ ନେଇ କାର୍ଯ୍ୟକାରୀ କରିଥାନ୍ତି । କେତେକ ଚିନ୍ତାଶୀଳ ବ୍ୟକ୍ତି ଶିକ୍ଷାକୁ ଜାତୀୟ ସମୃଦ୍ଧିର ମୂଳାଧାର ବୋଲି ମନେକରି ଥାଆନ୍ତି ।

"ଶିକ୍ଷା" ଶବ୍ଦଟିର ଆକ୍ଷରିକ ଅର୍ଥ ମୂଳତଃ ସଂସ୍କୃତ ଶବ୍ଦ 'ଶିକ୍ଷ୍'ରୁ ସୃଷ୍ଟି ହୋଇଛି । 'ଶିକ୍ଷ୍' ଶବ୍ଦର ଅର୍ଥ 'ଉପଦେଶ ଦେବା' । ଅର୍ଥାତ୍ ଯେ ଶିକ୍ଷକ ସେ 'ଉପଦେଷ୍ଟା' ଏବଂ ଯେ ଶିକ୍ଷାର୍ଥୀ ସେ 'ଉପଦିଷ୍ଟ' ବୋଲି ଧରାଯାଏ ।

ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଚିନ୍ତାଧାରା ଅନୁଯାୟୀ ନିମ୍ନରେ ଶିକ୍ଷାର କେତେକ ସଂଜ୍ଞା ପ୍ରଦାନ କରାଗଲା ।

**ପ୍ରାଚ୍ୟ ଚିନ୍ତାଧାରା**

"ସା ବିଦ୍ୟା ଯା ବିମୁକ୍ତୟେ" ।

ଅର୍ଥାତ୍ ଯାହା ମଣିଷକୁ ମୁକ୍ତିଦିଏ ତାହାହିଁ ଶିକ୍ଷା— (ଉପନିଷଦ)

ସତ୍ୟର ଅନୁସରଣ ଓ ସତ୍ଆଚରଣ ନିମନ୍ତେ ଯାହା ମଣିଷକୁ ସହାୟତା କରିଥାଏ ତାହା ଶିକ୍ଷା —

—ଯାହା ମଣିଷକୁ ଆତ୍ମବିଶ୍ୱାସୀ ଓ ଆତ୍ମତ୍ୟାଗୀ କରିପାରେ, ତାହା ଶିକ୍ଷା ।

—ଯାହା ଅନ୍ତର୍ନିହିତ ଆଧ୍ୟାତ୍ମିକ ପ୍ରେରଣାକୁ ଜାଗ୍ରତ କରେ, ତାହା ଶିକ୍ଷା ।

—ଯାହା ବ୍ୟକ୍ତି ଜୀବନକୁ ସମଗ୍ର ସୃଷ୍ଟି ସହିତ ସୁସଙ୍ଗତ କରିଦିଏ ତାହାହିଁ ଶିକ୍ଷା ।
(ରବୀନ୍ଦ୍ରନାଥ)

—ଯାହା ଶିଶୁ ଓ ମଣିଷର ଦେହ ମନ ଓ ଆତ୍ମାର ସର୍ବୋତ୍ତମ ବିକାଶ ଘଟାଇଥାଏ ତାହାହିଁ ଶିକ୍ଷା ।
(ମହାତ୍ମା ଗାନ୍ଧି)

—ଯାହା ମଣିଷର ଅନ୍ତର୍ନିହିତ ସ୍ୱର୍ଗୀୟ ପୂର୍ଣ୍ଣତାକୁ ପରିପ୍ରକାଶ କରେ ତାହାହିଁ ଶିକ୍ଷା ।
(ସ୍ୱାମୀ ବିବେକାନନ୍ଦ)

**ପାଶ୍ଚାତ୍ୟ ଚିନ୍ତାଧାରା**

ଏକ ସୁସ୍ଥ ଶରୀରରେ ଏକ ସୁସ୍ଥମନର ଧାରଣାହିଁ ଶିକ୍ଷା । ସର୍ବୋତ୍ତମ ସତ୍ୟ, ଭବ୍ୟତା ଏବଂ ସୌନ୍ଦର୍ଯ୍ୟପ୍ରାପ୍ତି ନିମନ୍ତେ ମଣିଷର କର୍ମଶକ୍ତିକୁ ବିକଶିତ କରିବାହିଁ ଶିକ୍ଷା ।
(ଆରିଷ୍ଟଟଲ)

—ମଣିଷର ଅନ୍ତର୍ନିହିତ ଶକ୍ତିର ସ୍ୱାଭାବିକ, ସୁସଙ୍ଗତ ଏବଂ ପ୍ରଗତିଶୀଳ ବିକାଶ ହିଁ ଶିକ୍ଷା
(ପେଷ୍ଟାଲକ୍‌ସି)

**ଶିକ୍ଷାର କାର୍ଯ୍ୟ ଓ ଭୂମିକା**

ଶିକ୍ଷାର ଅର୍ଥ ସମ୍ପର୍କୀୟ ଆଲୋଚନା ତଥା ଶିକ୍ଷାର ସଂଜ୍ଞାଗୁଡ଼ିକରୁ ଆମେ ଅନ୍ତତଃ ଏତିକି ଜାଣିପାରୁ ଯେ ଶିକ୍ଷା ଏକ ସାମାଜିକ ବ୍ୟବସ୍ଥା । ଏ ବ୍ୟବସ୍ଥା ପ୍ରଥମତଃ, ବ୍ୟକ୍ତିପାଇଁ ଉଦ୍ଦିଷ୍ଟ । ଶିକ୍ଷା ମାଧ୍ୟମରେ ବ୍ୟକ୍ତିର ବିକାଶ ଏବଂ ଉନ୍ନତି, ଅଗ୍ରଗତି ସମ୍ଭବ ହେବା ସଙ୍ଗେ ସଙ୍ଗେ ସମାଜ, ଦେଶ ତଥା ଜାତିର ବିକାଶ ଓ ଅଗ୍ରଗତି ମଧ୍ୟ ସମ୍ଭବପର ହୋଇଥାଏ । ଶିକ୍ଷାର ଭୂମିକା ମୂଳତଃ ଦ୍ୱିବିଧ—

(୧) ଶିକ୍ଷା ଶିକ୍ଷାର୍ଥୀକୁ ଆତ୍ମୋପଲବ୍ଧି ଏବଂ ବ୍ୟକ୍ତିଗତ ବିକାଶ ପାଇଁ ସମର୍ଥ କରାଏ ।

(୨) ଶିକ୍ଷା ଶିକ୍ଷାର୍ଥୀକୁ ଏକ ଦକ୍ଷ ନାଗରିକ ହେବା ସଙ୍ଗେ ସଙ୍ଗେ ସାମାଜିକ ବିକାଶ ସାଧିତ କରାଇବାରେ ସହାୟକ ହୋଇଥାଏ ।

ଶିକ୍ଷାର ଉପରୋକ୍ତ ଦୁଇଟି ଭୂମିକା ପରସ୍ପର ପରିପୂରକ । କାରଣ ବ୍ୟକ୍ତି ଓ ସମାଜ ପରସ୍ପର ଅଙ୍ଗାଙ୍ଗୀଭାବେ ଜଡ଼ିତ । ବ୍ୟକ୍ତି ଏକ ସାମାଜିକ ପ୍ରାଣୀ । ବ୍ୟକ୍ତିର ବିକାଶ ସାମାଜିକ ପରିବେଶରେ ହିଁ ସମ୍ଭବ । ସମାଜରେ କେତେକ ପରମ୍ପରା, ରୀତିନୀତି, ଚାଲିଚଳନ, ନୀତିନିୟମ, ଅଧିକାର ଇତ୍ୟାଦି ରହିଛି । ଏସବୁ ପୁରୁଷାନୁକ୍ରମିକ ଭାବରେ ଆଉ ଏକ ପୁରୁଷକୁ ଗଡ଼ି ଆସୁଛି । କାଳକ୍ରମେ ଏଗୁଡ଼ିକ ପରିମାର୍ଜିତ ହୋଇ ସାମାଜିକ ବିକାଶରେ ସହାୟକ ହୋଇଆସୁଛି । ସମାଜର ସାଂସ୍କୃତିକ ଏବଂ ସାମାଜିକ ବ୍ୟବସ୍ଥା ପରିବର୍ତ୍ତିତ ପରିପ୍ରେକ୍ଷୀରେ ପରିବର୍ତ୍ତନ ହେଉଛି । ଏଗୁଡ଼ିକର ରକ୍ଷଣାବେକ୍ଷଣ ଭାର ଶିକ୍ଷା ଉପରେ ନିର୍ଭର କରେ । ଶିକ୍ଷା ବ୍ୟକ୍ତିକୁ ସୁରୁଚିପୂର୍ଣ୍ଣ ରୂପେ ଜୀବନ ଯାପନ ପାଇଁ ସାହାଯ୍ୟ କରିଥାଏ ଏବଂ ତାର ବ୍ୟକ୍ତିତ୍ୱର ପୂର୍ଣ୍ଣାଙ୍ଗ ବିକାଶରେ ସହାୟକ ହୋଇଥାଏ । ଏହି ପରିବର୍ତ୍ତନଶୀଳ-ସମାଜରେ ଶିକ୍ଷା ବ୍ୟବସ୍ଥାର ମଧ୍ୟ ପରିବର୍ତ୍ତନ ହେବା ବାଞ୍ଛନୀୟ ।

ଆମେରିକାର ଆଧୁନିକ ଶିକ୍ଷାବିତ୍ ଜନ୍ ଡ୍ୟୁଇଙ୍କ (John Dewey) ମତରେ ଶିକ୍ଷା ଏକ ଜୀବନ ବ୍ୟାପି ପ୍ରକ୍ରିୟା । ଏହାଦ୍ୱାରା ବ୍ୟକ୍ତିର ସାମର୍ଥ୍ୟ ବିକଶିତ ହୋଇଥାଏ । ଏହା ଫଳରେ ବ୍ୟକ୍ତି ନିଜ ପରିବେଶକୁ ନିୟନ୍ତ୍ରଣ ଅଥବା ସଦୁପଯୋଗ କରିବାରେ ଅଧିକ ସମର୍ଥ ହୋଇଥାଏ ଏବଂ ତାର ସମସ୍ତ ଆବଶ୍ୟକତା ପୂରଣ କରିବାକୁ ଚେଷ୍ଟା କରିଥାଏ । ଜନ୍ ଡ୍ୟୁଇ (John Dewey)ଙ୍କର ଏହି ଶିକ୍ଷା ଦର୍ଶନରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଶିଶୁ କେତେଗୁଡ଼ିଏ ସହଜାତ ପ୍ରବୃତ୍ତି ନେଇ ଜନ୍ମଗ୍ରହଣ କରିଥାଏ । ତାର ଏହି ପ୍ରବୃତ୍ତିଗୁଡ଼ିକ ସମାଜର ଚାହିଦା ଅନୁସାରେ ଶିକ୍ଷା ପ୍ରକ୍ରିୟା ଦ୍ୱାରା ବିକାଶ ଲାଭ କରିଥାଏ । ତେଣୁ ଶିକ୍ଷାର ଏ ଦ୍ୱିବିଧ ପ୍ରକ୍ରିୟା କିପରି ସମ୍ପନ୍ନ ହେଉଅଛି ତାହା ଜାଣିବା ଆବଶ୍ୟକ ।

## ବ୍ୟକ୍ତି ବିଶେଷ ପ୍ରତି ଶିକ୍ଷାର ଅବଦାନ

ଶିଶୁର ସର୍ବାଙ୍ଗୀନ ତଥା ସମନ୍ୱିତ ବିକାଶ ସକାଶେ ଆନୁଷ୍ଠାନିକ ଶିକ୍ଷା ଅଥବା ତାଲିମର ଆବଶ୍ୟକତା ନିଶ୍ଚିତ ଭାବେ ରହିଛି । ତେଣୁ ଶିଶୁର ଉପଯୁକ୍ତ

ଅଭିବୃଦ୍ଧି ଓ ସମନ୍ୱିତ ବିକାଶ ପାଇଁ ଉଭୟ ସ୍ୱାଭାବିକ ଅନୁକୂଳ ପରିବେଶ ଓ ଶିକ୍ଷାଗତ ତାଲିମର ଆବଶ୍ୟକତା ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ପ୍ରତ୍ୟେକ ଶିଶୁ ନିଜକୁ ପରିବେଶ ସହିତ ଖାପଖୁଆଇ ଚଳିବାକୁ ଚେଷ୍ଟା କରିଥାଏ । ଶିଶୁ ନିଜର ଅନୁଭୂତିରୁ ଏବଂ ପରିବାର ଓ ସାହିପଡ଼ିଶାର ଅଭିଜ୍ଞ ସଭ୍ୟଙ୍କଠାରୁ ଅନେକ କିଛି ଶିକ୍ଷାକରେ । ତା'ର ଏହି ଶିକ୍ଷାଲବ୍ଧଜ୍ଞାନ ତାକୁ ଭବିଷ୍ୟତ ଜୀବନ ଯାପନ ସକାଶେ ବହୁ ପରିମାଣରେ ସାହାଯ୍ୟ କରିଥାଏ ।

ତେଣୁ ଏହି ଶିଶୁ ଅବସ୍ଥାରୁ ତାକୁ ଯଦି ଉପଯୁକ୍ତ ନିର୍ଦ୍ଦେଶନା ମିଳେ ତେବେ ତା'ଠାରେ ଉପଯୁକ୍ତ ଅଭ୍ୟାସ ଓ ମନୋବୃତ୍ତି ବିକଶିତ ହୋଇପାରିବ । ଏଥିପାଇଁ ଶିଶୁକୁ ଯେଉଁ ନିର୍ଦ୍ଦେଶନା ଦେବାକଥା ତାହା ଶିକ୍ଷା କାର୍ଯ୍ୟକ୍ରମରେ ସୁଚିନ୍ତିତ ଯୋଜନା ଦ୍ୱାରା କରାଯାଇପାରେ । ଏପରି ଏକ ସୁଚିନ୍ତିତ କାର୍ଯ୍ୟକ୍ରମ ଶିଶୁର ସହଜାତ ଗୁଣର ବିକାଶ ସାଧନ କରିପାରିବ ଓ ପରିବେଶ ସହିତ ଖାପଖୁଆଇ ଚଳିବା ପାଇଁ ଶିଶୁକୁ ଆବଶ୍ୟକ ପ୍ରେରଣା ମଧ୍ୟ ଦେଇପାରିବ ।

ପ୍ରତ୍ୟେକ ଶିଶୁର ସ୍ୱାଭାବିକ ଏବଂ ଅନ୍ତର୍ନିହିତ ସାମର୍ଥ୍ୟ ଓ ଶକ୍ତି ଅଛି । ତାର ପ୍ରାକୃତିକ ଏବଂ ସାମାଜିକ ପରିବେଶ ତାକୁ କୌଣସି କାର୍ଯ୍ୟ କରିବା ସକାଶେ ବାଧ କରିଥାଏ । ଏହି ଅବସ୍ଥାରେ ଶିଶୁକୁ ଉପଯୁକ୍ତ ନିର୍ଦ୍ଦେଶନା ଦିଆଗଲେ, ତାକୁ ଅନେକ ପରିମାଣରେ ଶକ୍ତିର ଅଯଥା ଅପଚୟରୁ ରକ୍ଷା କରାଯାଇ ପାରନ୍ତା ।

କୌଣସି ଏକ ନିର୍ଦ୍ଦେଶିତ କ୍ରିୟାକଳାପ ପରବର୍ତ୍ତୀ କାର୍ଯ୍ୟପାଇଁ ଶିଶୁକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଠିକ୍ ଠିକ୍ ପ୍ରତିକ୍ରିୟା ଚାଲୁରଖିବା ପାଇଁ ସକ୍ଷମ କରାଏ, ଏହାହିଁ ଶିକ୍ଷାର ଭୂମିକା ।

ଏହା ବଳରେ ଶିଶୁଟିଏ କ୍ରମେ ମନ୍ଦ ଲକ୍ଷ୍ୟକୁ ପରିତ୍ୟାଗ କରିବା ସଙ୍ଗେ ସଙ୍ଗେ ଭଲ ଲକ୍ଷ୍ୟ ଦିଗରେ ଅଧିକ ଆଗ୍ରହୀ ହେବ ।

## ପ୍ରାପ୍ତ ବୟସରେ ଦାୟିତ୍ୱ ଏବଂ ଅଧିକାର ପାଇଁ ଶିଶୁର ପ୍ରସ୍ତୁତି—

ଆଜିର ଶିଶୁ ଆସନ୍ତା କାଲିର ପ୍ରାପ୍ତ ବୟସ୍କ ବ୍ୟକ୍ତି । ସେହି ଦୃଷ୍ଟିରୁ ଶିଶୁକୁ ପ୍ରାପ୍ତ ବୟସର ଦାୟିତ୍ୱ ତୁଲାଇବା ଦିଗରେ ପ୍ରସ୍ତୁତ କରିବା ଆବଶ୍ୟକ । ଏହା ଶିକ୍ଷାର

ଏକ ମୁଖ୍ୟ କାର୍ଯ୍ୟ ବୋଲି ଅବହମାନ କାଳରୁ ଧ ଯାଉଛି । ସବୁ ଯୁଗରେ ଶିକ୍ଷା ଶିଶୁମାନଙ୍କୁ ଆବଶ୍ୟକ ଜ୍ଞାନ, ପରବର୍ତ୍ତୀ ଜୀବନ କାଳରେ ସମସ୍ୟାଗୁଡ଼ିକୁ ସଫଳତାର ସହିତ ସମ୍ମୁଖୀନ ହେବାପାଇଁ ଶକ୍ତି ଓ ତାଲିମ ଦେଇଆସିଛି । ସେମାନେ ଯେତେବେଳେ ବଡ ହୁଅନ୍ତି, ସେତେବେଳେ ଶିକ୍ଷା ସେମାନଙ୍କୁ ସମାଜ ବା ଗୋଷ୍ଠୀର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ହେବା ଦିଗରେ ସାହାଯ୍ୟ କରିଥାଏ ।

କେତେକ ଆଧୁନିକ ଶିକ୍ଷା ସମାଲୋଚକ ଶିକ୍ଷାର କାର୍ଯ୍ୟଟିକୁ ସମାଲୋଚନା କରନ୍ତି । ସେମାନଙ୍କ ମତରେ ଏହାଦ୍ୱାରା ଶିକ୍ଷାକୁ କେବଳ ମଣିଷର ପେଟ ପୋଷିବା ପାଇଁ ଏକ ଉପାୟ ବୋଲି ଧରି ଯାଇଛି । ଏହି ମତ ଅନୁଯାରେ ଶିଶୁକୁ ଏକ କ୍ଷୁଦ୍ର ବୟସ୍କ ବ୍ୟକ୍ତି ହିସାବରେ ଗ୍ରହଣ କରିଯାଇଛି । ଫଳରେ ତାର ଶୈଶବର ଆନନ୍ଦ ଓ ଆବଶ୍ୟକତାକୁ ଆଦୌ ଗୁରୁତ୍ୱ ଦିଆଯାଇନାହିଁ । ଏହା ଫଳରେ ବ୍ୟକ୍ତିଗତ ପାର୍ଥକ୍ୟ ପ୍ରତି ଦୃଷ୍ଟି ନ ଦେଇ ସମସ୍ତଙ୍କ ପାଇଁ ଏକ ପ୍ରକାରର ଶିକ୍ଷା ପ୍ରଣାଳୀ ପ୍ରୟୋଗ କରିଯାଉଛି ।

କିନ୍ତୁ ଯଦି ବୟସ୍କ ଜୀବନ ପାଇଁ ଶିଶୁର ପ୍ରସ୍ତୁତି ପ୍ରଣାଳୀରେ ଶିକ୍ଷାର ଭୂମିକାକୁ ଠିକ୍ ଭାବରେ ଅନୁଶୀଳନ କରିଯାଏ ତେବେ ଦେଖାଯିବ ଯେ ଭବିଷ୍ୟତର ଆବଶ୍ୟକତା ପାଇଁ ପ୍ରସ୍ତୁତିକୁ ପ୍ରାଧାନ୍ୟ ଦେବାରେ କିଛି ଭୁଲ ନାହିଁ । ଏହା କିନ୍ତୁ ସିଧାସଳଖ (ପ୍ରତ୍ୟକ୍ଷ) ଭାବରେ ନ ହୋଇ ପରୋକ୍ଷ ଭାବରେ ହେବା ଉଚିତ୍ । ବୈଜ୍ଞାନିକ ଓ କାରିଗରୀ ଅଗ୍ରଗତି ଫଳରେ ଆଧୁନିକ ସାମାଜିକ ଜୀବନ ଦ୍ରୁତ ବେଗରେ ପରିବର୍ତ୍ତନ ହୋଇ ଚାଲିଛି । ଏଣୁ ଶିଶୁର ସାମର୍ଥ୍ୟକୁ ସଫଳ ବିନିଯୋଗ କରି ଶିଶୁକୁ ଭବିଷ୍ୟତ ପାଇଁ ପ୍ରସ୍ତୁତ କରିବା ଏକାନ୍ତ ବାଞ୍ଛନୀୟ ।

## ସମାଜ ପ୍ରତି ଶିକ୍ଷାର ଭୂମିକା

ସାମାଜିକ ପ୍ରାଣୀ ହିସାବରେ ମଣିଷ ନିଶ୍ଚିତ ଭାବେ ସମାଜରେ ଦୀକ୍ଷିତ ଏବଂ ସମାଜ ପାଇଁ ଦୀକ୍ଷିତ । କାରଣ ସମାଜ ମଣିଷ ପାଇଁ ଉଦ୍ଦିଷ୍ଟ । ସାମାଜିକ ପରିବେଶର ପ୍ରତିକ୍ରିୟା ମଣିଷର ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ପରିପ୍ରକାଶରେ ସହାୟକ ହୋଇଥାଏ । ପାରମ୍ପରିକ ଭାବରେ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ବ୍ୟକ୍ତିତ୍ୱର ପ୍ରଭାବ ଜନସ୍ଥ ବ୍ୟକ୍ତିମାନଙ୍କର ଅଭିବୃଦ୍ଧି ଓ ବିକାଶକୁ ପ୍ରଭାବିତ କରେ ।

ଆମ ପୂର୍ବପୁରୁଷମାନେ ବାସ କରୁଥିବା ସମାଜ ଓ ବର୍ତ୍ତମାନର ସମାଜ ମଧ୍ୟରେ ଅନେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସେତେବେଳର ସମାଜ ଥିଲା ଅତି ସରଳ ଓ ସହଜ । ଆବଶ୍ୟକ ସ୍ଥଳେ ସମାଜର ଓ ପରିବାରର କନିଷ୍ଠ ସଦସ୍ୟମାନେ ମଧ୍ୟ ବିଭିନ୍ନ କାର୍ଯ୍ୟକଳାପରେ ଅଂଶ ଗ୍ରହଣ କରିବାର ସୁଯୋଗ ପାଉଥିଲେ । ସେତେବେଳେ ପିଲାମାନଙ୍କର ଶିକ୍ଷାର ଦାୟିତ୍ୱ ଥିଲା ପରିବାରର ମୁଖ୍ୟ ବ୍ୟକ୍ତିମାନଙ୍କ ଉପରେ । ସେଥିପାଇଁ କୌଣସି ବିଧିବଦ୍ଧ ଆନୁଷ୍ଠାନିକ ଶିକ୍ଷା ଆବଶ୍ୟକ ପଡୁ ନ ଥିଲା । କିନ୍ତୁ କାଳକ୍ରମେ ସାଂସ୍କୃତିକ ପରମ୍ପରା ବିକାଶ ଲାଭ କରିବା ଫଳରେ ଜୀବନଯାପନ ପ୍ରଣାଳୀ ଉନ୍ନତ ହେବା ସଙ୍ଗେ ସଙ୍ଗେ କର୍ମ କୌଶଳ ଓ କାରିଗରୀ ଶିକ୍ଷାର ଆବଶ୍ୟକତା ଅନୁଭୂତ ହେଲା ।

ବିଜ୍ଞାନର ଅଗ୍ରଗତି ସଙ୍ଗେ ସଙ୍ଗେ ସାମାଜିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନ ଦେଖାଗଲା । ଜ୍ଞାନ ବିଜ୍ଞାନର ପରିସର ବୃଦ୍ଧି ପାଇଲା । ଅନୁଭୂତିର ପରିସର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପରିବାର ମଧ୍ୟରେ ସୀମିତଥିବା ଅଣ-ଆନୁଷ୍ଠାନିକ ଶିକ୍ଷା କ୍ରମଶଃ ଆନୁଷ୍ଠାନିକ ଶିକ୍ଷାରୂପେ ବିକାଶ ଲାଭ କଲା । ଏହି ଆନୁଷ୍ଠାନିକ ଶିକ୍ଷା, ଶିକ୍ଷାର୍ଥୀର ଶାରୀରିକ, ମାନସିକ, ବୌଦ୍ଧିକ ବିକାଶରେ ସହାୟକ ହେବ ବୋଲି କାଳକ୍ରମେ ଶିକ୍ଷାବିତ୍‌ମାନେ ଉପଲବ୍ଧି କଲେ । ଏହି ପ୍ରକାର ଆନୁଷ୍ଠାନିକ ଶିକ୍ଷାର ପ୍ରଧାନ ମାଧ୍ୟମ ହେଲା ବିଦ୍ୟାଳୟ ।

ତେଣୁ ବିଦ୍ୟାଳୟରେ ଏକ ସାମାଜିକ ପରିବେଶ ସୃଷ୍ଟି କରିବା ଦରକାର, ଯାହା ମାଧ୍ୟମରେ କି ଶିଶୁମାନେ ଆବଶ୍ୟକତା ଲକ୍ଷ୍ୟ ଏବଂ ଆଦର୍ଶ ଅନୁସାରେ ନିଜ ନିଜ ସାମର୍ଥ୍ୟ ଓ ଶକ୍ତିକୁ ବିକଶିତ କରି ହେବ ।

ସ୍ୱାଧୀନତା ପରେ କେବଳ ଭାରତବର୍ଷରେ ନୁହେଁ ଅନ୍ତର୍ଜାତିକ ସ୍ତରରେ ନୂତନ ସମସ୍ୟାର ଉଦ୍ଭବ ହେବା ସଙ୍ଗେ ସଙ୍ଗେ ନାନା ପରିବର୍ତ୍ତନ ପରିଲକ୍ଷିତ ହେଉଛି । ପରିବର୍ତ୍ତିତ ପରିସ୍ଥିତି ସହ ଖାପଖୁଆଇ ଏବଂ ବିଭିନ୍ନ ସମସ୍ୟାକୁ ବିଚାରକୁ ନେଇ ଶିକ୍ଷା ବ୍ୟବସ୍ଥାର ଆଭିମୁଖ୍ୟରେ ମଧ୍ୟ ପରିବର୍ତ୍ତନ ହେବା ବାଞ୍ଛନୀୟ । ଆଧୁନିକ ସମାଜରେ ଗତାନୁଗତିକ ଶିକ୍ଷା ବ୍ୟବସ୍ଥା ଆଦୌ ଗ୍ରହଣୀୟ ନୁହେଁ । ମଣିଷ ଜୀବନରେ ଅଭିବୃଦ୍ଧି ଜୀବନବ୍ୟାପି ଥାଏ । ଯେହେତୁ ଶିକ୍ଷା ମଣିଷର ଅଭିବୃଦ୍ଧି ପାଇଁ ଉଦ୍ଦିଷ୍ଟ । ସେହେତୁ ଶିକ୍ଷା ଏକ ଜୀବନବ୍ୟାପି ଧାରାବାହିକ ପ୍ରକ୍ରିୟା । ମଣିଷର ଅନୁଭୂତି ଅନୁସାରେ ଶିକ୍ଷା ପରିମାର୍ଜିତ ହୋଇଥାଏ ।

ଶିକ୍ଷାର୍ଥୀର ଏହି ପ୍ରକାର ବିକାଶ ଅନୁଭୂତି ବ୍ୟତିରେକେ ସମ୍ଭବ ନୁହେଁ । ଏଥିପାଇଁ ସମସ୍ତ ପ୍ରକାରର ସୁବିଧା ଓ ସୁଯୋଗ ଯୋଗାଇ ଦେବା ଆବଶ୍ୟକ ।

ଶିକ୍ଷା ଏକ ସାମାଜିକ ପ୍ରକ୍ରିୟା, ଶିକ୍ଷା, ସମାଜ ଓ ବ୍ୟକ୍ତି ପରସ୍ପର ପରିପୂରକ । ଶିକ୍ଷା ବ୍ୟକ୍ତିର ସର୍ବାଙ୍ଗୀନ ବିକାଶରେ ସହାୟକ ହୋଇଥାଏ । ବ୍ୟକ୍ତିର ଉନ୍ନତିରେ ସମାଜର ଅଗ୍ରଗତି ସମ୍ଭବପର ହୋଇଥାଏ । ସୁତରାଂ ଶିକ୍ଷା ସମାଜ ତଥା ବ୍ୟକ୍ତିର ଉନ୍ନତିରେ ପ୍ରମୁଖ ଭୂମିକା ଗ୍ରହଣ କରିଥାଏ ।

ଏ ଯୁଗ ବିଜ୍ଞାନର ଯୁଗ । ଏ ଯୁଗରେ କ୍ରମାଗତ ଭାବରେ ଜ୍ଞାନର ବିସ୍ଫୋରଣ ଘଟୁଛି । ଚିନ୍ତାଧାରାରେ ମଧ୍ୟ ବୈପ୍ଳବିକ ପରିବର୍ତ୍ତନ ସଂଗଠିତ ହେଉଛି । ବିଜ୍ଞାନର ଅଗ୍ରଗତି ଓ ଚିନ୍ତାଧାରାର ପରିବର୍ତ୍ତନ ମାନବ ଜୀବନକୁ ବିଭିନ୍ନ ଭାବରେ ପ୍ରଭାବିତ କରୁଛି । ବିଜ୍ଞାନ ଯେ କେବଳ ମାନବ ଜାତିର ବିକାଶ କ୍ଷେତ୍ରରେ ସହାୟକ ହେଉଛି ତାହା ନୁହେଁ, ଏହା ମଧ୍ୟ ମଣିଷକୁ ଆଶାବାଦୀ କରିଛି ଏବଂ ଆତ୍ମବିଶ୍ୱାସୀ ହେବାରେ ସହାୟକ ହେଉଛି । ଏତଦ୍‌ବ୍ୟତୀତ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ମଧ୍ୟ ବ୍ୟାପକ ପରିବର୍ତ୍ତନ ଘଟିଛି ।

## ଶିକ୍ଷାର ଲକ୍ଷ୍ୟ

ଲକ୍ଷ୍ୟ ଏକ ଚେତନଶୀଳ ଅଭିପ୍ରାୟ । ଏହା ଆଗରୁ ସ୍ଥିରୀକୃତ ହୋଇଥାଏ । ସେହିପରି ଶିକ୍ଷା ଏକ ଯୋଜନାବଦ୍ଧ, ଉଦ୍ଦେଶ୍ୟମୂଳକ ପ୍ରକ୍ରିୟା । ଏହି ପ୍ରକ୍ରିୟା ଉଭୟ ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ଦ୍ୱାରା ହିଁ ସମ୍ପାଦିତ ହୋଇଥାଏ । ପ୍ରକୃତରେ ଦେଖିବାକୁ ଗଲେ ଲକ୍ଷ୍ୟ ବା ଉଦ୍ଦେଶ୍ୟ ବିନା କୌଣସି କାର୍ଯ୍ୟ ଅର୍ଥପୂର୍ଣ୍ଣ ହେବା ସମ୍ଭବ ନୁହେଁ । ଏଣୁ ଶିକ୍ଷାର କୌଣସି ନା କୌଣସି ଲକ୍ଷ୍ୟ ରହିବା ଦରକାର ଏବଂ ଶିକ୍ଷାର ଲକ୍ଷ୍ୟ ହିଁ ବ୍ୟକ୍ତି ଏବଂ ସମାଜ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ । କାରଣ ଶିକ୍ଷାର ଏହି ଲକ୍ଷ୍ୟ ଉପରେ ବ୍ୟକ୍ତି ଏବଂ ସମାଜର ଉପଯୁକ୍ତ ଅଭିବୃଦ୍ଧି ଓ ବିକାଶ ନିର୍ଭର କରେ । ଶିକ୍ଷା ବ୍ୟବସ୍ଥାରେ ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚ ଶିକ୍ଷା ପରି କେତେକ ସ୍ତର ରହିଛି । କୌଣସି ଏକ ଶିକ୍ଷା ସ୍ତରର ଲକ୍ଷ୍ୟ ସ୍ଥିର ନ କରିବା ଯାଏ ସେହି ଶିକ୍ଷାସ୍ତର ପାଇଁ ପାଠ୍ୟକ୍ରମ ଓ ପ୍ରଣାଳୀ ସ୍ଥିର କରିବା ସମ୍ଭବ ନୁହେଁ ।

ବିଭିନ୍ନ ସ୍ତରରେ ଶିକ୍ଷାର ଲକ୍ଷ୍ୟ ଭିନ୍ନ ଭିନ୍ନ ହୋଇଥିଲେ ହେଁ ସାମଗ୍ରିକ ଭାବରେ ଶିକ୍ଷାର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ରହିଛି । ଏହି ଲକ୍ଷ୍ୟଗୁଡ଼ିକ ଉଭୟ ଆଦର୍ଶବାଦୀ

ଓ ବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ପ୍ରଭାବିତ । ଆଦର୍ଶବାଦୀ ଚିନ୍ତାଧାରା ଅନୁଯାୟୀ ଶିକ୍ଷାର ଲକ୍ଷ୍ୟ, ଜ୍ଞାନ ଆହରଣ, ଚରିତ୍ର ଗଠନ, 'ବ୍ୟକ୍ତି ଓ ସମାଜର ବିକାଶ', 'ସଂସ୍କୃତିର ବିକାଶ', 'ମାନସିକ ସଂଯମ', ଇତ୍ୟାଦି । ଅପର ପକ୍ଷରେ ବାସ୍ତବବାଦୀ ଚିନ୍ତାଧାରା ଅନୁଯାୟୀ ଶିକ୍ଷାର ଲ ୟ ପ୍ରଚଳିତ ଜୀବନ-ଦର୍ଶନ, ରାଜନୈତିକ ଆଦର୍ଶ, ବୃତ୍ତିଗତ ଦକ୍ଷତା ଇତ୍ୟାଦି ମଧ୍ୟରେ ପର୍ଯ୍ୟବସିତ ।

ସ୍ଥୂଳତଃ ବାସ୍ତବବାଦ ଜୀବନ-ଦର୍ଶନ ଅନୁସାରେ ଶିକ୍ଷାର ଲକ୍ଷ୍ୟ ବ୍ୟକ୍ତି-କେନ୍ଦ୍ରିକ ଏବଂ ଆଦର୍ଶବାଦ ଅନୁସାରେ ଶିକ୍ଷାର ଲକ୍ଷ୍ୟ ସମାଜକେନ୍ଦ୍ରିକ ।

ପ୍ରତ୍ୟେକ ବ୍ୟକ୍ତିର କିଛି ନା କିଛି ସହଜାତ ଗୁଣ ଅଛି । ବ୍ୟକ୍ତିର ଏହିଗୁଣ-ଗୁଡ଼ିକର ପରିପୂର୍ଣ୍ଣ ତଥା ସର୍ବୋଚ୍ଚ ବିକାଶ କରିବା ଶିକ୍ଷାର କାର୍ଯ୍ୟ । ଏହି ଦୃଷ୍ଟିରୁ ଶିକ୍ଷାର ଲକ୍ଷ୍ୟ ବ୍ୟକ୍ତିର ସମନ୍ୱିତ ବିକାଶ ବୋଲି କୁହାଯାଇପାରେ । କିନ୍ତୁ ସମାଜ ବିନା ବ୍ୟକ୍ତିର ପ୍ରକୃତ ସ୍ଥିତି ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ସମାଜ ଏବଂ ସାମାଜିକ ପରିବେଶରେ ହିଁ ବ୍ୟକ୍ତିର ବ୍ୟକ୍ତିତ୍ୱର ବିକାଶ ସମ୍ଭବ ହୋଇଥାଏ ।

ଜୀବବାଦୀ (Biologist), ବାସ୍ତବବାଦୀ (Realists), ମନୋବିଜ୍ଞାନୀ (Psychologist), ଆଧ୍ୟାତ୍ମବାଦୀ (Spiritualist) ଅଥବା ପ୍ରଗତିବାଦୀ (Progressisist), ଏ ସମସ୍ତେ "ବ୍ୟକ୍ତିର ଏକକତ୍ୱ" (Individuality) କଥା କହି ଆସୁଛନ୍ତି ଅର୍ଥାତ୍ ଜଣେ ବ୍ୟକ୍ତି ଆଉ ଜଣେ ବ୍ୟକ୍ତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଜୀବବାଦୀମାନେ କହନ୍ତି—ବ୍ୟକ୍ତିପାଇଁ ହିଁ ଶି ।; ବ୍ୟକ୍ତି କିପରି ବଞ୍ଚିବ ଏବଂ ବ୍ୟକ୍ତି କିପରି ପରିପୂର୍ଣ୍ଣ ଜୀବନଯାପନ କରିବ ତାହାହିଁ ଶିକ୍ଷାର ଲକ୍ଷ୍ୟ । ବାସ୍ତବବାଦୀଙ୍କ ମତରେ ବ୍ୟକ୍ତିର ସ୍ୱାଭାବିକ ଏବଂ ସ୍ୱାଧୀନ ବିକାଶ କରାଇବା ହିଁ ଶିକ୍ଷାର ମୂଳ ଲକ୍ଷ୍ୟ । ସେମାନଙ୍କର ଯୁକ୍ତି ହେଲା ଯେ ପ୍ରକୃତିରୁ ଯାହା କିଛି ଉତ୍ପନ୍ନ ତାହା ସବୁ ଉତ୍ତମ । କିନ୍ତୁ ମଣିଷ ହାତରେ ପଡ଼ିଲେ ତାହାର ଅଧୋଗତି ହୋଇଥାଏ । ମନୋବିଜ୍ଞାନୀମାନେ କହନ୍ତି ଯେ, ଶିକ୍ଷା ଏକ 'ବ୍ୟକ୍ତିଗତ' ପ୍ରକ୍ରିୟା—କୌଣସି ଦୁଇଟି ଶିଶୁ ଏପରିକି ଯାଆଁଳା ଶିଶୁ ଦୁହିଁଙ୍କ ମଧ୍ୟରେ ଅନେକ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଏଣୁ ପ୍ରତ୍ୟେକ ଶିଶୁର ଅନ୍ତର୍ନିହିତ ଶକ୍ତିଗୁଡ଼ିକୁ ସମ୍ପୂର୍ଣ୍ଣରୂପେ ବିକଶିତ କରାଇବା ଶିକ୍ଷାର ଲକ୍ଷ୍ୟ ହେବା ଉଚିତ୍ । ଜଣେ ଆଧ୍ୟାତ୍ମବାଦୀଙ୍କ ମତରେ ବ୍ୟକ୍ତି ଏକ ସ୍ୱତନ୍ତ୍ର ସତ୍ତା । ବ୍ୟକ୍ତି ନିଜେ ନିଜର କର୍ମ ପାଇଁ ଦାୟୀ । ଆଧ୍ୟାତ୍ମିକ ବିକାଶ ମଣିଷର ବ୍ୟକ୍ତିଗତ ବ୍ୟାପାର ହୋଇଥିବା ଦୃଷ୍ଟିରୁ ଶିକ୍ଷାର ପ୍ରଧାନ ଭୂମିକା ଅଥବା ଲକ୍ଷ୍ୟ ହେଲି ବ୍ୟକ୍ତିର

ଆତ୍ମୋପଲବ୍‌ଧିକୁ ସମ୍ଭବ କରାଇବା ଏବଂ ବ୍ୟକ୍ତି ନିଜର ଜୀବନରେ ଉଚ୍ଚତର ମୂଲ୍ୟବୋଧକୁ ଉପଲବ୍‌ଧି କରିବ, ସେ ଦିଗରେ ସହାୟକ ହେବା । ପ୍ରଗତିବାଦୀ-ମାନଙ୍କ ମତରେ ଭିନ୍ନ ଭିନ୍ନ ସମୟରେ ଜଣେ ଜଣେ ବ୍ୟକ୍ତିବିଶେଷ ଜନ୍ମଗ୍ରହଣ କରି ସେମାନଙ୍କର କାର୍ଯ୍ୟକଳାପ ମାଧ୍ୟମରେ ବିଭିନ୍ନ ପ୍ରକାରର ଅଗ୍ରଗତି ପାଇଁ ଦିଗ୍‌ଦର୍ଶନ ଦେଇଥାଆନ୍ତି । ସେମାନଙ୍କ ଦିଗ୍‌ଦର୍ଶନ ବିନା ମାନବ ସମାଜର କୌଣସି ଅଗ୍ରଗତି ସମ୍ଭବପର ହୋଇପାରି ନଥାନ୍ତା । ଏଣୁ ଏହି ସତ୍ୟକୁ ଆଧାର କରି ଶିକ୍ଷାର ଲକ୍ଷ୍ୟକୁ ସ୍ଥିର କରାଯିବା ଉଚିତ୍ ।

କିନ୍ତୁ ଅନେକ ସମାଲୋଚକ ଶିକ୍ଷାର ଏପରି ବ୍ୟକ୍ତିକୈନ୍ଦ୍ରିକ ଲକ୍ଷ୍ୟର ପକ୍ଷପାତୀ ନୁହନ୍ତି । ସେମାନଙ୍କର ଯୁକ୍ତି ଯେ ଏହି ଲକ୍ଷ୍ୟ ଦ୍ୱାରା ଶିକ୍ଷା ପରିଚାଳିତ ହେଲେ ବ୍ୟକ୍ତି ଆତ୍ମକୈନ୍ଦ୍ରିକ ଏବଂ ସ୍ୱାର୍ଥପର ହେବାର ଯଥେଷ୍ଟ ଆଶଙ୍କା ଅଛି । ବ୍ୟକ୍ତିର ବିକାଶ ଯେ ଆପେ ଆପେ ହୋଇଯିବ ତାହା ବି ଠିକ୍ ନୁହେଁ । ପୁନଶ୍ଚ ଯଦି ସମାଜର ସମୃଦ୍ଧ ପରମ୍ପରା ବ୍ୟକ୍ତିବିଶେଷଙ୍କ ଚିନ୍ତାଧାରା ଓ କାର୍ଯ୍ୟକଳାପକୁ ପ୍ରଭାବିତ କରୁ ନଥାନ୍ତା, ତେବେ ସେମାନଙ୍କ ଦ୍ୱାରା ସମାଜର ଏପରି ପ୍ରଗତି ଓ ଅଗ୍ରଗତି ସମ୍ଭବ ହୁଅନ୍ତା ନାହିଁ । ଆମେ ପ୍ରତ୍ୟେକ ଯେ ଏକ ଏକ ଆତ୍ମନିର୍ଭରଶୀଳ ଏକକ ଏଥିରେ କାହାର ଦ୍ୱିମତ ନାହିଁ । କିନ୍ତୁ ବ୍ୟକ୍ତିର ଏହି ବିଶେଷତ୍ୱ ସମାଜର ପରିବେଷ୍ଟନୀ ଭିତରେ ପରିପୁଷ୍ଟ । ସମାଜ ହିଁ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶ ପାଇଁ ପ୍ରକୃଷ୍ଟ କ୍ଷେତ୍ର ।

ଅନ୍ୟ ପକ୍ଷରେ ଯେଉଁ ଆଦର୍ଶବାଦୀମାନେ ଶିକ୍ଷାର ଲକ୍ଷ୍ୟ ସମାଜକୈନ୍ଦ୍ରିକ ବୋଲି ମନେ କରନ୍ତି । ସେମାନଙ୍କ ମତରେ 'ସମାଜ ହିଁ ସତ୍ୟ; ବ୍ୟକ୍ତି ସତ୍ୟ ନୁହେଁ' । ସେମାନଙ୍କ ମତରେ ବ୍ୟକ୍ତି ହେଉଛି ସମାଜର ଏକ ଅଂଶ ବିଶେଷ । ଯେଉଁ ସମାଜରେ ଏବଂ ସାମାଜିକ ପରିବେଶରେ ବ୍ୟକ୍ତିର ବିକାଶ ଏବଂ ପରିପ୍ରକାଶ ସମ୍ଭବପର, ସେହି ସମାଜରୁ ବ୍ୟକ୍ତିକୁ ଅଲଗା କଲେ ଅନ୍ୟ ପ୍ରକାରେ ବ୍ୟକ୍ତିର ଏକକତ୍ୱ ମୂଲ୍ୟହୀନ ଏବଂ ବ୍ୟକ୍ତିର ବ୍ୟକ୍ତିତ୍ୱ ଅର୍ଥହୀନ ହୋଇପଡ଼େ । ଯେ କୌଣସି ରାଷ୍ଟ୍ର ନିଜ ଉଦ୍ଦେଶ୍ୟ ସାଧନ ପାଇଁ ଏବଂ ନିଜର ପ୍ରଗତି ପାଇଁ ବ୍ୟକ୍ତିର ଜୀବନକୁ ପ୍ରାଧାନ୍ୟ ଦେବା ଉଚିତ । ଏଥିପାଇଁ ବ୍ୟକ୍ତିର ଶିକ୍ଷା ହିଁ ରାଷ୍ଟ୍ରର ସର୍ବୋତ୍ତମ ଧ୍ୟେୟ । ଏହି ବ୍ୟବସ୍ଥାରେ ପାଠ୍ୟକ୍ରମ, ଶିକ୍ଷା ପଦ୍ଧତି ଇତ୍ୟାଦି ରାଷ୍ଟ୍ର ବା ସମାଜ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ବ୍ୟକ୍ତି ସ୍ୱ-ଇଚ୍ଛାରେ ନିଜର ବିକାଶ ସାଧନ କରିପାରିବା ସମ୍ଭବ ହୁଏ ନାହିଁ । ଅର୍ଥାତ୍ ଶିକ୍ଷା

ରାଷ୍ଟ୍ରର ପୂର୍ଣ୍ଣ ନିୟନ୍ତ୍ରଣରେ ରହିବ ଓ ସମସ୍ତ ଶିକ୍ଷା ପ୍ରକ୍ରିୟା ଶୃଙ୍ଖଳା ମାଧ୍ୟମରେ ପରିଚାଳିତ ହେବ ।

ଆମ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର । ଆମ ରାଷ୍ଟ୍ରରେ ପରିଚାଳିତ ଶିକ୍ଷାର ଉଦ୍ଦିଷ୍ଟ ଲକ୍ଷ୍ୟଗୁଡ଼ିକ ବିଷୟରେ ଆଲୋଚନା କରିବା ପୂର୍ବରୁ, ଶିକ୍ଷାର କେତେଗୁଡ଼ିଏ ଗତାନୁଗତିକ ଲକ୍ଷ୍ୟ ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ । ଏଗୁଡ଼ିକ ମଧ୍ୟରୁ କେତେକ ମୁଖ୍ୟ ଲକ୍ଷ୍ୟ ହେଲା—ଶିକ୍ଷାର ବୃତ୍ତିଭିତ୍ତିକ ଲକ୍ଷ୍ୟ, ସାଂସ୍କୃତିକ ଲକ୍ଷ୍ୟ, ନୈତିକ ଲକ୍ଷ୍ୟ ଏବଂ ଆଧ୍ୟାତ୍ମିକ ଲକ୍ଷ୍ୟ ।

## ବୃତ୍ତିଭିତ୍ତିକ ଲକ୍ଷ୍ୟ

ଅତୀତରେ ଏହା ଏକ ଘରୋଇ ଏବଂ କୌଳିକ ବ୍ୟାପାର ଥିଲା । ସମୟକ୍ରମେ ଏହା ଶିକ୍ଷାନୁଷ୍ଠାନର ଦାୟିତ୍ୱ ବୋଲି ପରିଗଣିତ ହେଉଛି । ଶିକ୍ଷା ବ୍ୟକ୍ତିକୁ ଉପାର୍ଜ୍ଜନ-କ୍ଷମ କରାଇବା ଦରକାର । ଅର୍ଥାତ୍ ଶିକ୍ଷା ମଣିଷ ଜୀବନର ଏକ ଅଳଙ୍କାର ନ ହୋଇ ମଣିଷ ପାଇଁ ଏକ ଆବଶ୍ୟକୀୟ ବିଷୟ ହେବା ଉଚିତ୍ । ଅର୍ଥନୈତିକ ସ୍ୱାବଲମ୍ବନଶୀଳତା ଲାଭ ନ କରିବା ପର୍ଯ୍ୟନ୍ତ ମଣିଷ ସମାଜରେ ସହଜ ଓ ସରଳ ଭାବରେ ଅଗ୍ରସର ହେବା ସମ୍ଭବ ନୁହେଁ । ତେବେ ଏହା ଶିକ୍ଷାର ଏକମାତ୍ର ଲକ୍ଷ୍ୟ ହିସାବରେ ଗ୍ରହଣ କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ଏହି ଲକ୍ଷ୍ୟକୁ ଶିକ୍ଷାର ଅନ୍ୟତମ ଲକ୍ଷ୍ୟ ବୋଲି ଗ୍ରହଣ କରାଯାଇଛି ।

## ସାଂସ୍କୃତିକ ଲକ୍ଷ୍ୟ

ଏକ ଅପରିପକ୍ୱ ମଣିଷ ପରିପକ୍ୱ ହେବା ପାଇଁ ସଂସ୍କୃତିର ଆବଶ୍ୟକତା ରହିଛି । ସମାଜରେ ଏକ ସଭ୍ୟ ଭାବରେ ମନୁଷ୍ୟ ଯାହାକିଛି ଜ୍ଞାନ, ବିଶ୍ୱାସ, କଳା, ନୈତିକତା, ରୀତିନୀତି ଶିକ୍ଷା କରେ ଏବଂ ଯାହା କିଛି ସାମର୍ଥ୍ୟ ହାସଲ କରେ, ସବୁ କିଛି ସେହି ସଂସ୍କୃତିର ପରିସରଭୁକ୍ତ । 'ସଂସ୍କୃତି ମାନବ ସମାଜର ମୂଳଦୁଆ ଏବଂ ଏକ ମୌଳିକ ବିଷୟ' ବୋଲି ମହାତ୍ମା ଗାନ୍ଧି ମତବ୍ୟକ୍ତ କରିଥିଲେ । ଏହା ମଣିଷର ଚରିତ୍ର ଏବଂ ବ୍ୟକ୍ତିଗତ ଆଚରଣରେ ପ୍ରତିଫଳିତ ହୋଇଥାଏ । ଏପରିକି ବ୍ୟକ୍ତି ବିଶେଷ କିପରି ଚାଲୁଛି, କିପରି ପୋଷାକ ପିନ୍ଧୁଛି, କିପରି କଥାବାର୍ତ୍ତା କରୁଛି, କିପରି ଗୁରୁଜନମାନଙ୍କ ପ୍ରତି ଆଚରଣ ପ୍ରଦର୍ଶନ କରୁଛି, ଏ ସବୁ ସଂସ୍କୃତି ମାଧ୍ୟମରେ

ପ୍ରତିଫଳିତ ହୋଇଥାଏ । ସଂସ୍କୃତି ଭିତ୍ତିକ ଶିକ୍ଷା ମନୁଷ୍ୟକୁ ଏପରି ଜ୍ଞାନ ଏବଂ ଗୁଣର ଅଧିକାରୀ କରାଇଥାଏ, ଯଦ୍ଦ୍ୱାରା ମନୁଷ୍ୟର ଜୀବନ ଶ୍ରୀମଣ୍ଡିତ ହୁଏ—ସୁଖ ସମୃଦ୍ଧିରେ ଭରିଯାଏ ।

**ନୈତିକ ଲକ୍ଷ୍ୟ**

କେତେକ ଶିକ୍ଷାବିତ୍‌ଙ୍କ ମତରେ ଚରିତ୍ର ଗଠନ ମୂଳକ ଲକ୍ଷ୍ୟ ଶିକ୍ଷାର ପ୍ରଥମ ଲକ୍ଷ୍ୟ ହେବା ଉଚିତ ଏବଂ ଶିକ୍ଷାର ଅନ୍ୟ ସମସ୍ତ ଲକ୍ଷ୍ୟ ତାହାର ଅଧୀନସ୍ଥ ହେବା ଉଚିତ । ଚରିତ୍ରବତ୍ତାର ମୂର୍ତ୍ତିମନ୍ତ ପ୍ରତୀକ ମହାତ୍ମା ଗାନ୍ଧୀ କହିଛନ୍ତି—"ଆମେ ସାର୍ଥକ ଶିକ୍ଷା ବୋଲି ସେହି ଶିକ୍ଷାକୁ କହିବା, ଯେଉଁ ଶିକ୍ଷାର ସର୍ବପ୍ରଥମ କାର୍ଯ୍ୟ ହେବ ହୃଦୟର ଶିକ୍ଷା ଅଥବା ନୈତିକ ଶିକ୍ଷା ।" ଯଦି ଆମେ ବ୍ୟକ୍ତିର ଚରିତ୍ର ଗଠନ କରିବାରେ ସଫଳ ହୋଇପାରିବା, ତେବେ ସମାଜ ନିଜେ ନିଜର ଯତ୍ନ ନେଇ ପାରିବ । ଉପଯୁକ୍ତ ଚରିତ୍ର ଗଠନ ହିଁ ଶିକ୍ଷାର ମୁଖ୍ୟ ଲକ୍ଷ୍ୟ ।

ତେବେ ଏଠାରେ ପ୍ରଶ୍ନ ଉଠେ, 'ଚରିତ୍ର' ଅଥବା 'ନୈତିକତା' କ'ଣ ? ଯଦି ମଣିଷକୁ ତାର ପ୍ରବୃତ୍ତି ଅନୁସାରେ ଅନୁଶୀଳନ କରିବା । ଆମେ ଦେଖିବା ଯେ, ସେ ସ୍ଥୂଳତଃ ଦୁଇ ପ୍ରକାର ପ୍ରବୃତ୍ତିର ଆଧାର । ଏକ ପକ୍ଷରେ ସେ ଉତ୍ତେଜନଶୀଳ (ସଂଯମ ହୀନ) ଓ ପାଶବିକ ଏବଂ ଅନ୍ୟ ପକ୍ଷରେ, ସେ ଜ୍ଞାନୀ ଏବଂ ସୁରୁଚି ସମ୍ପନ୍ନ । ଯେତେବେଳେ ତାର ଏହି ପରବର୍ତ୍ତୀ ପ୍ରବୃତ୍ତି, ପୂର୍ବ ପ୍ରବୃତ୍ତିକୁ ଜୟ କରେ, ସେତେବେଳେ ତା'ଠାରେ 'ଚରିତ୍ର' ବିକଶିତ ହୁଏ । ପ୍ରକୃତରେ ଦେଖିବାକୁ ଗଲେ ମଣିଷ ନୀତିବାନ୍ ହୋଇ ଜନ୍ମ ହୋଇ ନ ଥାଏ । ଅନ୍ୟାନ୍ୟ ପ୍ରାଣୀଙ୍କ ଭଳି ସେ ବି କେତେକ ନିମ୍ନ ପ୍ରବୃତ୍ତି ସହ ଜନ୍ମଗ୍ରହଣ କରେ । ଶିକ୍ଷା ହିଁ ତାକୁ ସଭ୍ୟ ଓ ସଂଯତ କରିବାରେ ସାହାଯ୍ୟ କରେ । ପଶୁ ପ୍ରବୃତ୍ତିଗୁଡ଼ିକୁ ସଂଯତ କରିବା ଶିକ୍ଷାର ଲକ୍ଷ୍ୟ ।

ଶିକ୍ଷାର ଏହି ନୈତିକତା ଭିତ୍ତିକ ଲକ୍ଷ୍ୟ କେତେକାଂଶରେ ସମାଲୋଚିତ ହୋଇଅଛି । ପ୍ରଥମ ସମାଲୋଚନା ହେଉଛି ଯେ, ନୈତିକତା ଦିଗରେ ଅଧିକ ଦୃଷ୍ଟି ଦେଲେ ମଣିଷର ବ୍ୟକ୍ତିତ୍ୱର ଅନ୍ୟାନ୍ୟ ଦିଗ ଅବହେଳିତ ହୋଇପାରେ । ଦ୍ୱିତୀୟତଃ ନୈତିକତା ଏକ ମାନସିକ ଗୁଣ ଏବଂ ମଣିଷ ଏକାଧାରରେ ଏକ ଶରୀର,

ମନ ଓ ଆତ୍ମାର ପରିପ୍ରକାଶ । ଏଣୁ ଶିକ୍ଷାର ଲକ୍ଷ୍ୟ କେବଳ ନୈତିକତା ଭିତ୍ତିକ ହୋଇ ନ ପାରେ ।

### ଶିକ୍ଷାର ଆଧ୍ୟାତ୍ମିକ ଲକ୍ଷ୍ୟ

ବିଶିଷ୍ଟ ଦାର୍ଶନିକ ଓ ଶି‌କ୍ଷାବିତ୍ ଡକ୍ଟର ସର୍ବପଲ୍ଲୀ ରାଧାକିଷ୍ଣନ୍ ମଧ୍ୟ ଶିକ୍ଷାର ଏଇ ଆଧ୍ୟାତ୍ମିକ ଭିତ୍ତିକ ଲକ୍ଷ୍ୟ ଉପରେ ବେଶ୍ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେ କହିଛନ୍ତି—'ଶିକ୍ଷାର ଲକ୍ଷ୍ୟ ଜାତୀୟ ଦକ୍ଷତା ନୁହେଁ କି ବିଶ୍ୱର ଏକତ୍ୱ ନୁହେଁ'—ଏହା ବ୍ୟକ୍ତିକୁ ହୃଦ୍‌ବୋଧ କରାଇବ ଯେ, ତା ଭିତରେ ଏପରି କିଛି ଅଛି ଯାହାକି ବୁଦ୍ଧିଠାରୁ ଅଧିକ ଗମ୍ଭୀରତର । ତାକୁ 'ଆତ୍ମା' କୁହାଯାଇ ପାରେ । ପ୍ରକୃତରେ ଦେଖିବାକୁ ଗଲେ ଏହି ଆଧ୍ୟାତ୍ମବାଦ ଭାରତୀୟ ସାଂସ୍କୃତିକ ଓ ସାମାଜିକ ଜୀବନରେ ପରିବ୍ୟାପ୍ତ । ଜଣେ ସ୍ୱାଧୀନ ଭାରତୀୟ କେବଳ ଯେ ଏଇ ଆଧ୍ୟାତ୍ମିକତାକୁ ନିଜ ଭିତରେ ସାଇତି ରଖିବ ତା' ନୁହେଁ, ସେ ଏହି ଆଧ୍ୟାତ୍ମବାଦକୁ, ଏଇ ଆଧ୍ୟାତ୍ମିକ ପରମ୍ପରାକୁ ତଥା ଆଦର୍ଶକୁ ସାରା ବିଶ୍ୱରେ ପ୍ରଚାର କରିବା ଉଚିତ୍ । ଭାରତୀୟମାନେ

ଏ ବିଷୟରେ ଅଜ୍ଞ ରହିବାଟା ଦୁର୍ଭାଗ୍ୟଜନକ ହେବ । ତେଣୁ ଆମ ଶିକ୍ଷାର ମୌଳିକ ଲକ୍ଷ୍ୟ ଆଧ୍ୟାତ୍ମିକ ବିକାଶ ହେବା ଉଚିତ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ସମସ୍ତେ ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମ ବିଶ୍ୱାସ କରିବେ । ଏହାର ଅର୍ଥ "ସମ୍ପୂର୍ଣ୍ଣ ସତ୍ୟ ଉପରେ ଆଧାରିତ କେତେକ ନୀତିନିୟମ ଉପରେ ବିଶ୍ୱାସ ରଖିବା ।" ଶିକ୍ଷାର ଲକ୍ଷ୍ୟ ଏହା ନହେଲେ ଫଳାଫଳ ଖୁବ୍ ଦୁଃଖ ଦାୟକ ଓ କ୍ଷତି କାରକ ହେବ । ଜଣେ ପାଶ୍ଚାତ୍ୟ ଦାର୍ଶନିକ କହିଛନ୍ତି ଯେ, ଏ ପୃଥିବୀର ମାନବ ଜାତି ଆଗରେ ଦୁଇଟି ବାଟ ଅଛି—ହୁଏତ ସେ ନିଜକୁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ କରିବ । ନଚେତ୍ ନୈତିକତା ଓ ଆଧ୍ୟାତ୍ମିକତା ମାଧ୍ୟମରେ ସହାବସ୍ଥାନ କରିବ । ତଥାପି କେତେକ ଲୋକ ଆଶଙ୍କା କରନ୍ତି ଯେ, ଶିକ୍ଷା ମାଧ୍ୟମରେ ଯଦି ଆଧ୍ୟାତ୍ମିକ ଦର୍ଶନକୁ ପ୍ରଚାର କରାଯିବ, ତେବେ ହୁଏତ ଲୋକେ ପଳାୟନବାଦୀ, ସଂସାର ତ୍ୟାଗୀ ଏବଂ ସମ୍ପୂର୍ଣ୍ଣ ନିଷ୍କ୍ରିୟ ହୋଇଯିବେ । ଏପରି ଶିକ୍ଷା ହୁଏତ 'ବ୍ୟକ୍ତିବାଦ' ମନୋବୃତ୍ତିକୁ ସୃଷ୍ଟି କରିବ । ଶିକ୍ଷାର ଏହି ଲକ୍ଷ୍ୟଗୁଡ଼ିକୁ ନେଇ ବିଭିନ୍ନ ସମୟରେ ଆମର ଜାତୀୟ ଶିକ୍ଷାନୀତିରେ ଶିକ୍ଷାର ଲକ୍ଷ୍ୟ ସ୍ଥିର କରାଯାଇଛି ।

## ଜାତୀୟ ଶିକ୍ଷାନୀତିରେ ଶିକ୍ଷାର ଲକ୍ଷ୍ୟ

୧୯୬୬ ମସିହାରେ କୋଠାରି କମିଶନ୍‌ଙ୍କର ରିପୋର୍ଟ ଅନୁଯାୟୀ ଜାତୀୟ ଶିକ୍ଷାର ଲକ୍ଷ୍ୟ ନିମ୍ନମତେ ସ୍ଥିର କରାଯାଇଥିଲା । ଯଥା—

(୧) ଉତ୍ପାଦନ ବୃଦ୍ଧି କରିବା ।

(୨) ସାମାଜିକ ଏବଂ ଜାତୀୟ ସଂହତି ହାସଲ କରିବା ।

(୩) ଆଧୁନିକ କରଣକୁ ଆଗେଇନବା ଏବଂ

(୪) ସାମାଜିକ, ନୈତିକ ଏବଂ ଆଧ୍ୟାତ୍ମିକ ମୂଲ୍ୟବୋଧକୁ ଜୀବନରେ ଅନୁଶୀଳନ କରିବା ।

୧୯୮୬ ମସିହାର ଜାତୀୟ ଶିକ୍ଷା ନୀତି ଅନୁଯାୟୀ ଶିକ୍ଷାର ଲକ୍ଷ୍ୟ ହେଲା—

(୧) ଭାରତୀୟ ସାମାଜିକ-ସାଂସ୍କୃତିକ-ଅଭିନ୍ନତାର ଉନ୍ନତି ଏବଂ ପରିପ୍ରକାଶ କରିବା ।

(୨) ଆବହମାନ କାଳରୁ ଚାଲି ଆସୁଥିବା କର୍ମ ପ୍ରକ୍ରିୟାରେ ନୂତନ ନିର୍ଦ୍ଦେଶନାପୂର୍ବକ ସମସ୍ୟାର ଆହ୍ୱାନକୁ ମୁକାବିଲା କରିବା ।

(୩) ଆଗରୁ ସୃଷ୍ଟି କରାଯାଇଥିବା ସମ୍ପଦର ସର୍ବୋତ୍ତମ ଫାଇଦା ଉଠାଇବା ।

(୪) ପରିବର୍ତ୍ତନର ଫଳାଫଳକୁ ସମସ୍ତଙ୍କ ନିକଟରେ ପହଞ୍ଚାଇବା ।

— ଜାତୀୟ ଅଗ୍ରଗତିକୁ ତ୍ୱରାନ୍ୱିତ କରିବା ।

— ସର୍ବସାଧାରଣ ନାଗରିକତ୍ୱ ତଥା ସାଂସ୍କୃତିକ ମୂଲ୍ୟବୋଧର ଉନ୍ନତି କରାଇବା ।

— ଜାତୀୟ ସଂହତିକୁ ସୁଦୃଢ଼ କରିବା ।

— ବ୍ୟକ୍ତିଗତ ଜୀବନ ଏବଂ ଜନସାଧାରଣ-ଜୀବନ ମଧ୍ୟରେ ଏକ ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ।

— ନୈତିକ ମୂଲ୍ୟବୋଧକୁ ଆଚରଣରେ ପରିପ୍ରକାଶ କରିବା ।

— ଜାତୀୟ ସଦ୍ଭାବସ୍ଥାନ, ବୈଜ୍ଞାନିକ ମନୋଭାବ ଏବଂ ମାନସିକ ତଥା ଆତ୍ମିକ ସ୍ୱାଧୀନତା ପ୍ରତି ସମ୍ବେଦନଶୀଳତା ଏବଂ ପ୍ରତ୍ୟକ୍ଷ ଅନୁଭୂତିକୁ ନିର୍ମଳତର କରିବା ।

— ବିଭିନ୍ନ ଅର୍ଥନୈତିକ ସ୍ୱଚ୍ଛଳତା ପାଇଁ ମାନବ ସମ୍ବଳକୁ ବିନିଯୋଗ କରାଇବା ।

— ଆଗାମୀ ବଂଶଧରଙ୍କ ଅନ୍ତରରେ ମାନବୀୟ ମୂଲ୍ୟବୋଧ ତଥା ସାମାଜିକ ନ୍ୟାୟ ପାଇଁ ଚେତନା ଜାଗ୍ରତ କରାଇବା ଏବଂ

— ନୂତନ ମାନବ ସମ୍ବଳ ବିକାଶର ତାଲିମ ମାଧ୍ୟମରେ ଜନସାଧାରଣ ଯେପରି ଭବିଷ୍ୟତର ନୂତନ ପରିବେଶରୁ ଫାଇଦା ଉଠାଇ ପାରିବେ ସେଥିପାଇଁ ସେମାନଙ୍କୁ ପ୍ରସ୍ତୁତ କରାଇବା ।

ଏସବୁ ସ୍ଥୂଳଭାବରେ ଶିକ୍ଷାର ସାମଗ୍ରିକ ଲକ୍ଷ୍ୟ କଥା ଆଲୋଚନା କରାଗଲା । କିନ୍ତୁ ବର୍ତ୍ତମାନର ଶିଶୁ କୈନ୍ଦ୍ରିକ (child centred) ଶିକ୍ଷାର ନିର୍ଦ୍ଦିଷ୍ଟ ଲକ୍ଷ୍ୟଗୁଡ଼ିକୁ ନିମ୍ନମତେ ନିର୍ଦ୍ଧାରିତ କରାଯାଇଛି —

୧ । ଶିଶୁ ନିଜର ସ୍ୱଭାବକୁ କିପରି ପୂର୍ଣ୍ଣଭାବେ ପ୍ରକାଶ କରିପାରିବ ସେ ଦିଗରେ ସାହାଯ୍ୟ କରିବା ।

୨ । ଶିଶୁ ନିଜର ଅନ୍ତର୍ନିହିତ ଶକ୍ତି ସହିତ ତାଳ ମିଳାଇ ଅଭିବୃଦ୍ଧି ପଥରେ ଆଗେଇବାକୁ ସାହାଯ୍ୟ କରିବା ।

୩ । ଜାତୀୟତା ପ୍ରତି ଗୁରୁତ୍ୱ ଦେବା ପାଇଁ ଶିଶୁକୁ ସଚେତନ କରାଇବା ।

୪ । ଶିଶୁ ଯେପରି ନିଜେ ନିଜକୁ ଆବିଷ୍କାର କରିପାରିବ ସେଥିପାଇଁ ତାକୁ ସ୍ୱାଧୀନତା ଦେବା ।

୫ । ଶିଶୁ ଯେପରି ନିଜର ଅନୁମାନକୁ ସୁକ୍ରମ୍ୟୁ ଭାବରେ ଏବଂ ପରୀକ୍ଷାମୂଳକ-ଭାବେ ପରୀକ୍ଷା କରିବାର ସାମର୍ଥ୍ୟ ହାସଲ କରିବ ସେଥିପାଇଁ ତାକୁ ସାହାଯ୍ୟ କରିବା ।

୬ । ଶିଶୁ ଯେପରି ବିଭିନ୍ନ ତଥ୍ୟଗୁଡ଼ିକୁ ଗ୍ରହଣ କରିପାରିବ ଏବଂ ବାସ୍ତବତା ସହିତ ନିଜକୁ ଖାପ ଖୁଆଇବାକୁ ସମର୍ଥ ହେବ, ସେଥିପାଇଁ ତାକୁ ସାହାଯ୍ୟ କରିବା ।

୭ । ଶିଶୁ ଯେପରି ସମାଜ ପ୍ରତି ତାର ଦାୟିତ୍ୱକୁ ଉପଲବ୍‌ଧି କରିବ, ସେଥିପାଇଁ ତାକୁ ସାହାଯ୍ୟ କରିବା ।

୮ । ଶିଶୁ ଭିତରେ ଯେପରି ଏକ ବୈଜ୍ଞାନିକ ମନୋବୃତ୍ତି ସୃଷ୍ଟି ହୋଇ ପାରିବ. ସେଥିପାଇଁ ତାକୁ ସାହାଯ୍ୟ କରିବା ।

୯ । ଶିଶୁ ଯେପରି ସମସ୍ୟା ସମାଧାନର ସାମର୍ଥ୍ୟ ହାସଲ କରି ପାରିବ ସେଥିପାଇଁ ତାକୁ ସାହାଯ୍ୟ କରିବା ଏବଂ

୧୦ । ଜୀବନରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଯେପରି ଶିଶୁ ଭିତରେ ବିକଶିତ ହେବ ସେଥିପାଇଁ ତାକୁ ସାହାଯ୍ୟ କରିବା ।

ଏଠାରେ ପ୍ରାକ୍-ବିଦ୍ୟାଳୟ ଶିକ୍ଷା ବା ପ୍ରାକ୍-ଶୈଶବ ଶିକ୍ଷା ସ୍ତରରେ ଶିକ୍ଷାର ଲକ୍ଷ୍ୟ ସମ୍ବନ୍ଧରେ ଆଲୋଚନା କଲେ । ଏ ଆଲୋଚନା ସମ୍ପୂର୍ଣ୍ଣ ହୋଇ ପାରିବ ନାହିଁ । ଏ ସ୍ତରର ଶିକ୍ଷାର୍ଥୀ ହେଉଛନ୍ତି ୩ ବର୍ଷରୁ ୬ ବର୍ଷ ବୟସର ଶିଶୁଗଣ । ସେମାନେ ବିଦ୍ୟାଳୟ ସ୍ତରରେ ଶିକ୍ଷାଲାଭ କରିବା ପୂର୍ବରୁ ସେମାନଙ୍କୁ ପ୍ରାକ୍ ବିଦ୍ୟାଳୟ ଶିକ୍ଷାଲାଭ ପାଇଁ ପ୍ରସ୍ତୁତ କରିବା, ଏହି ପ୍ରାକ୍ ବିଦ୍ୟାଳୟ ଶି ।ର ଏକ ମୁଖ୍ୟ ଲକ୍ଷ୍ୟ । ଏହି ଲକ୍ଷ୍ୟଟିକୁ ହାସଲ କରିବା ପାଇଁ ଏ ସ୍ତରର ଶିକ୍ଷାକୁ ନିମ୍ନ ପ୍ରକାରେ ସ୍ଥିର କରାଯାଇଛି ।

୧ । ସୁସ୍ଥ ଜୀବନଯାପନ ଓ ଆତ୍ମପ୍ରତ୍ୟୟ ହାସଲ କରିବା ଦିଗରେ ଶିଶୁକୁ ସାହାଯ୍ୟ କରିବା । (ଯଥା ପୋଷାକ ପିନ୍ଧା, ପାଇଖାନାର ନିୟମିତ ବ୍ୟବହାର, ଭୋଜନ, ଜଳପାନ, ପୋଷାକପତ୍ରର ପରିଚ୍ଛନ୍ନତା ପାଇଁ ଅଭ୍ୟାସ କରାଇବା, ନିୟମିତ

ଦାନ୍ତଘଷା, ଗାଧୁଆ ପାଧୁଆ, ମୁଣ୍ଡକୁଣ୍ଡା, ନଖକଟା ଇତ୍ୟାଦି ବ୍ୟକ୍ତିଗତ କାର୍ଯ୍ୟପାଇଁ ଉପଯୁକ୍ତ କୌଶଳ ଶିକ୍ଷା କରିବା ଦିଗରେ ଶିଶୁକୁ ସାହାଯ୍ୟ କରିବା ।

୨ । ଶିଶୁର ଉତ୍ତମ ସ୍ୱାସ୍ଥ୍ୟ ଗଠନ, ମାଂସପେଶୀଗୁଡ଼ିକର ଉପଯୁକ୍ତ ବିକାଶ ଓ କେତେକ ପେଶୀ ସଞ୍ଚାଳନର କୌଶଳ ହାସଲ ଦିଗରେ ଶିଶୁକୁ ସାହାଯ୍ୟ କରିବା ।

୩ । ଶିଶୁମାନଙ୍କର ଆବେଗିକ ବିକାଶରେ ସହାୟକ ହେବା ।

୪ । ଶିଶୁମାନଙ୍କର ମନରେ ଉତ୍ତମ ସାମାଜିକ ଚେତନା ଆଣିବା ଏବଂ ପରସ୍ପର ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବା ପାଇଁ ସହାୟକ ହେବା । ସତ୍ୟ, ଅହିଂସା, ଗଣତନ୍ତ୍ର, ଧର୍ମନିରପେକ୍ଷତା ଆଦି ମୂଲ୍ୟବୋଧର ବିକାଶ ପାଇଁ ଶିଶୁମାନଙ୍କ ଭିତରେ ପ୍ରାରମ୍ଭିକ ଚେତନା ସୃଷ୍ଟି କରିବା ।

୫ । ଶିଶୁମାନଙ୍କ ମନରେ ସୌନ୍ଦର୍ଯ୍ୟବୋଧ ସୃଷ୍ଟି କରିବା ।

୬ । ସାମାଜିକ ଏବଂ ପ୍ରାକୃତିକ ପରିବେଶ ସହିତ ଶିଶୁମାନଙ୍କୁ ପରିଚିତ କରାଇବା । ପରିବେଶ ସମ୍ବନ୍ଧରେ ସେମାନଙ୍କ ମନରେ କୌତୁହଳ ସୃଷ୍ଟି କରାଇବା ।

୭ । ଶିଶୁମାନେ ଯେପରି ନିଜ ଚିନ୍ତା ତଥା ଅନୁଭୂତିକୁ ନିର୍ଭୁଲ, ସ୍ପଷ୍ଟ ଏବଂ ପ୍ରାଞ୍ଜଳଭାବେ ପ୍ରକାଶ କରିପାରିବେ । ସେଥିପାଇଁ ସାହାଯ୍ୟ କରିବା । ଅର୍ଥାତ୍ ଆତ୍ମପ୍ରକାଶ ତଥା ସ୍ୱାଧ୍ୟାୟ ସକାଶେ ଶିଶୁମାନଙ୍କୁ ପ୍ରବର୍ତ୍ତାଇ ସେମାନଙ୍କ ଭିତରେ ସ୍ୱାଧୀନ ଚେତନା ଜାଗ୍ରତ କରିବା ।

୮ । ସଂଖ୍ୟା, ଆକାର, ପ୍ରକାର, ପରିମାଣ, ସ୍ଥାନ, ସମୟ, ଓଜନ, ରଙ୍ଗ ପ୍ରଭୃତି ସମ୍ବନ୍ଧରେ ଧାରଣାର ବିକାଶ ନିମନ୍ତେ ଶିଶୁମାନଙ୍କୁ ସାହାଯ୍ୟ କରିବା ।

୯ । ପଠନ ଓ ଲିଖନ ପାଇଁ ଶିଶୁମାନଙ୍କୁ ପ୍ରସ୍ତୁତ କରିବା ଅର୍ଥାତ୍ ସେମାନଙ୍କୁ କେତେଗୁଡ଼ିଏ 'ପ୍ରାକ୍-ପଠନ' ଓ 'ପ୍ରାକ୍-ଲିଖନ' କୌଶଳମାନ ଶିଖାଇବା ।

## ଶିକ୍ଷା ଲାଭର କେତୋଟି ଦିଗ

ମନୁଷ୍ୟ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣର ଗୋଟିଏ ଅବିଶ୍ରାନ୍ତ ଧାରା (process) ଦେଇ ଗତିକରେ । ଯେପରି ବହୁଦିଗରୁ ଜଳସ୍ରୋତ ପ୍ରବାହିତ ହୋଇ

ହ୍ରଦ ଓ ସାଗରର ପରିସର ବୃଦ୍ଧି କରେ ସେହିପରି ନାନା ଦିଗରୁ ନାନା ପ୍ରକାରେ ଜ୍ଞାନ ଆହରଣ ଦ୍ୱାରା ମନୁଷ୍ୟର ଜ୍ଞାନ ଭଣ୍ଡାର ବୃଦ୍ଧି ପାଏ ଏବଂ ତାର ବ୍ୟକ୍ତିତ୍ୱ ପରିପୁଷ୍ଟ ହୁଏ । ଶୈଶବରୁ ମନୁଷ୍ୟ ତାର ପରିବାର, ବେଷ୍ଟନୀ ଓ ସମାଜରେ ବଢ଼ିବା ସଙ୍ଗେ ସଙ୍ଗେ ଦେଖି, ଶୁଣି, ପଢ଼ି ଓ କାମ କରି ଆପେ ଆପେ ବହୁତ କଥା ଶିଖିଯାଏ ।

ଲୋକେ ଭାବନ୍ତି ଯିଏ ସ୍କୁଲପାଠ ପଢ଼ି ନାହିଁ ସେ ଅଶିକ୍ଷିତ । କିନ୍ତୁ ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ମନେକର ରାମ କେଳେବାପା ସ୍କୁଲରେ ପାଠପଢ଼ି ନାହାନ୍ତି । କିନ୍ତୁ ସେ ଅଶିକ୍ଷିତ ନୁହନ୍ତି । ସେ କୃଷିବାସ କାମରେ ଧୁରନ୍ଧର । ରାମି ଡାକ ବଚନ ତାଙ୍କର ମୁଖସ୍ଥ । ସେ ଘର ଛପର ଜାଣନ୍ତି, ଭଲ ଦଉଡ଼ି ବଳି ଜାଣନ୍ତି ଏବଂ ମୃଦଙ୍ଗ ଉତ୍ତମଭାବେ ବଜାଇ ପାରନ୍ତି । ଗୋ ପାଳନ ସମ୍ବନ୍ଧେ ତାଙ୍କର ଭଲ ଜ୍ଞାନ ଅଛି । ତାଙ୍କର ବକ୍ତୃତାଧାରା ସ୍ପଷ୍ଟ ଓ ବଳିଷ୍ଠ । ତେଣୁ ଗାଁରେ ନ୍ୟାୟନିଶାପକୁ ତାଙ୍କୁ ଡାକରା ପଡ଼େ । ତେବେ କେଳେବାପା କଣ ଅପାଠୁଆ ? ଅଶିକ୍ଷିତ ?

ସେହିପରି ଆଈବୁଢ଼ି ନିରକ୍ଷର ହୋଇ ପାରନ୍ତି । କିନ୍ତୁ ଘରକରଣା, ରନ୍ଧାବଢ଼ା, ପିଠାପଣା, ଝୋଟିଚିତା ଆଦିରେ କିଏ ତାଙ୍କ ଆଗେ ସରି ହେବ । ଗାଈ ଗୋରୁଙ୍କ ଯତ୍ନ, କୁଣିଆ ମୈତ୍ର ଚର୍ଚ୍ଚା, ପୂନିଅଁ ପର୍ବ, ବିବାହ ବ୍ରତ ଓ ଭାର ବେଭାର ବିଷୟରେ ଆଈଙ୍କର ଅନୁଭୂତି ଅତି ଗଭୀର ଓ ମୂଲ୍ୟବାନ । ତେବେ ଆଈ କଣ ଅଶିକ୍ଷିତା ? ଏହି ସବୁ ଶିକ୍ଷା ସେମାନେ ପାରିବାରିକ, ପାରମ୍ପାରିକ ଓ ସାମାଜିକ ଜୀବନରେ ବାସ୍ତବ ଅନୁଭୂତିରୁ ଲାଭ କରିଛନ୍ତି । କିନ୍ତୁ ଲେଖି ପଢ଼ି ପାରୁଥିଲେ ସେମାନେ ଆହୁରି କେତେ କଥା ଜାଣିପାରିଥାନ୍ତେ ।

ଆମେ ଶିକ୍ଷା ପାଇବାକୁ ହେଲେ ସ୍କୁଲ କଲେଜ ବା ସେହିପରି କୌଣସି ଅନୁଷ୍ଠାନରେ ନାମ ଲେଖାଉ । ଏହିପରି ଶିକ୍ଷାକୁ Formal Education ବା ଆନୁଷ୍ଠାନିକ ବା ଔପଚାରିକ ଶିକ୍ଷା କୁହାଯାଏ । ସାଧାରଣତଃ ସରକାର ସ୍ୱାୟତ୍ତଶାସନ ସଂସ୍ଥା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଅନେକ ସାଧାରଣ ଓ ବୈଷୟିକ ସ୍କୁଲ କଲେଜ ପରିଚାଳନା କରିଥାନ୍ତି । ଏହି ଶିକ୍ଷାନୁଷ୍ଠାନଗୁଡ଼ିକ ପ୍ରାୟତଃ ସ୍ଥାୟୀ ଭାବରେ ନିର୍ଦ୍ଦିଷ୍ଟ ସ୍ଥାନ, କାଳ, ପାତ୍ର ଓ ନୀତି ନିୟମକୁ ଧରି ପରିଚାଳିତ ହୁଏ । ଏଥିରୁ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରଛାତ୍ରୀମାନେ Certificate ବା ପ୍ରମାଣପତ୍ର ପାଆନ୍ତି ଏବଂ ଯୋଗ୍ୟତା ଅନୁଯାୟୀ ସାଧାରଣ ସେବାରେ କାର୍ଯ୍ୟ କରିବା ପାଇଁ ଆବେଦନ କରିପାରନ୍ତି ।

ଯେଉଁ ଶିକ୍ଷା formal ବା ଆନୁଷ୍ଠାନିକ ନୁହେଁ ତାହା Non-formal Education ବା ଅଣ ଆନୁଷ୍ଠାନିକ ବା ଅନୌପଚାରିକ ଶିକ୍ଷା । ଏହା ପ୍ରାୟତଃ ଅସ୍ଥାୟୀ ଏବଂ ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କ ସୁବିଧା ଅନୁଯାୟୀ ଶିକ୍ଷାଦାନ ପାଇଁ ସ୍ଥାନ ଓ କାଳ ନିର୍ଦ୍ଧାରିତ ହୁଏ । ଏଥିରେ Formal Education ବା ଆନୁଷ୍ଠାନିକ ଶିକ୍ଷାର କଠୋର ଶୃଙ୍ଖଳା, ପାଠ୍ୟକ୍ରମ ଓ ପରୀକ୍ଷାର ଚାପ ନଥାଏ । ନାହାକ ଚାହାଲୀ, ଅଙ୍ଗନବାଡ଼ି, Non-formal ଶିକ୍ଷାକେନ୍ଦ୍ର ଓ Adult Education ବା ପ୍ରୌଢ଼ଶିକ୍ଷା ବା ଜନଶିକ୍ଷା କେନ୍ଦ୍ରଗୁଡ଼ିକୁ ଆମେ ଅଣ-ଆନୁଷ୍ଠାନିକ ବା Non-formal Educationର ଅନ୍ତର୍ଭୁକ୍ତ କରିପାରିବା । ଏବେ ସରକାର ଅଣ-ଆନୁଷ୍ଠାନିକ ଓ ଜନଶିକ୍ଷାକୁ ଗୁରୁତ୍ୱ ସହକାରେ ନିର୍ଦ୍ଦିଷ୍ଟ ଯୋଜନାର ଅନ୍ତର୍ଭୁକ୍ତ କରିଅଛନ୍ତି ।

ବର୍ତ୍ତମାନ ଆମ ଦେଶରେ ଅଣ-ଆନୁଷ୍ଠାନିକ ଶିକ୍ଷା ବା Non-formal Education କହିଲେ ଆମେ ଗୋଟିଏ ବ୍ୟାପକ ଲେଖାପଢ଼ା ଶିକ୍ଷା ଦେବା ଯୋଜନାକୁ ବୁଝୁ । ଆମ ଦେଶରେ ଶତକଡ଼ା କେବଳ ୫୨ଜଣ ଲେଖିପଢ଼ି ପାରନ୍ତି । ଓଡ଼ିଶାରେ ଲେଖିପଢ଼ି ପାରୁଥିବା ଲୋକ ଶତକଡ଼ା ୪୯ । ନାନା କାରଣରୁ ବିଶେଷତଃ ଦାରିଦ୍ର୍ୟ ହେତୁ ବହୁ ସଂଖ୍ୟାରେ ବାଳକ ବାଳିକା ସ୍କୁଲକୁ ଯାଇ ପାରନ୍ତି ନାହିଁ । ଏବଂ ସ୍କୁଲକୁ ଯାଇ ଅନେକ ପ୍ରାଥମିକ ସ୍ତରରୁ ପାଠପଢ଼ା ଛାଡ଼ି ଦେଇ ଲେଖାପଢ଼ା ଭୁଲିଯାଇ ନିରକ୍ଷର ହୋଇଯାଆନ୍ତି । ବିଶେଷତଃ ଦେଶର ଅନୁନ୍ନତ ଅଞ୍ଚଳରେ ବେଶି ବାଳିକା ଓ ମହିଳାଙ୍କ ମଧ୍ୟରେ ବହୁ ସଂଖ୍ୟାରେ ନିରକ୍ଷର ଲୋକ ଅଛନ୍ତି ।

ନିରକ୍ଷର ବାଳକ ବାଳିକାମାନଙ୍କୁ ଶିକ୍ଷିତ କରିବା ପାଇଁ ଆମ ଆନୁଷ୍ଠାନିକ ଶିକ୍ଷା ଯୋଜନା କରାଯାଇଛି । ଓଡ଼ିଶାରେ ୭ରୁ ୧୪ବର୍ଷର ବାଳକ ବାଳିକାଙ୍କୁ ଏହି ଶିକ୍ଷାର ପରିସରଭୁକ୍ତ କରାଯାଇଛି । ଆଦୌ ପଢ଼ି ନଥିବା ଏବଂ ପ୍ରାଥମିକ ସ୍ତରରେ ସ୍କୁଲ ଛାଡ଼ି ଦେଇଥିବା ବାଳକ ବାଳିକାମାନେ ତାଙ୍କର ଘର କାମ ସାରି ବା ଅନ୍ୟ କୌଣସି ବେଉସାରେ ବାପା ମାଆଙ୍କୁ ସାହାଯ୍ୟ କରି ଅବସର ସମୟରେ ଦୁଇ ତିନି ଘଣ୍ଟା ପାଇଁ ଶିକ୍ଷା ଲାଭ କରିବାକୁ ଶିକ୍ଷା କେନ୍ଦ୍ରକୁ ଆସନ୍ତି । ଏଥିପାଇଁ ଓଡ଼ିଶାରେ ବର୍ତ୍ତମାନ ପ୍ରାୟ ୧୭ ହଜାରରୁ ଅଧିକ କେନ୍ଦ୍ର ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ପରିଚାଳନା କରୁଅଛନ୍ତି । ଗୋଟିଏ ଗୋଟିଏ କେନ୍ଦ୍ରରେ ହାରାହାରି ୨୫ ଜଣ ବାଳକ ବାଳିକା ପାଠ ପଢ଼ନ୍ତି । ଏହି ଶିକ୍ଷାଦାନ କାର୍ଯ୍ୟକ୍ରମ ଏକାଦିକ୍ରମେ ଅଢ଼େଇ ବର୍ଷ ଚାଲେ । ଏହି

କେନ୍ଦ୍ରରେ ପଢ଼ି ବାଳକ ବାଳିକାମାନେ ଶୃଙ୍ଖଳେ ୫ମ ଶ୍ରେଣୀର ପରୀକ୍ଷା ଦେଇ ଉପର ଶ୍ରେଣୀମାନଙ୍କରେ ଉଚ୍ଚତର ବିଦ୍ୟାଳୟରେ ଆନୁଷ୍ଠାନିକ ଶିକ୍ଷା ଲାଭ କରିପାରନ୍ତି । ଏହି ଯୋଜନା ଅନୁଯାୟୀ କେନ୍ଦ୍ର ସରକାର ମଧ୍ୟ ସରକାରୀ ଓ ବେସରକାରୀ କେନ୍ଦ୍ର-ପରିଚାଳନା ପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ କରନ୍ତି । ଶିକ୍ଷକ ଶିକ୍ଷା ନିର୍ଦ୍ଦେଶାଳୟ ଏବଂ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ବା Directorate of Teacher Education and State Council for Educational Research and Training । ଭୁବନେଶ୍ୱର ଏହି ଶିକ୍ଷାର ବୈଷୟିକ ଦିଗ୍‌ଦର୍ଶନ (Technical guidance) ଦିଅନ୍ତି; ଯଥା—ପାଠ୍ୟକ୍ରମ ନିର୍ଦ୍ଧାରଣ, ପାଠ୍ୟପୁସ୍ତକ ପ୍ରସ୍ତୁତି ବିଷୟ ଏବଂ ଏହି କ୍ଷେତ୍ରରେ କାର୍ଯ୍ୟ କରୁଥିବା ସକଳ ସ୍ତରର କର୍ମୀଙ୍କ ପାଇଁ ତାଲିମର ବ୍ୟବସ୍ଥା ଆଦି ଏବଂ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକ ଏହି ଯୋଜନାର ପ୍ରଶାସନିକ ଦିଗ ପ୍ରତି ଦୃଷ୍ଟି ଦିଅନ୍ତି ।

Adult Education ବା ପ୍ରୌଢ଼ଶିକ୍ଷାକୁ ଏବେ ଜନଶିକ୍ଷା ବୋଲି କୁହାଯାଉଛି । ନିରକ୍ଷରତା ଦୂରୀକରଣ ପାଇଁ ଏହା ଗୋଟିଏ ବ୍ୟାପକ ଜାତୀୟ ଯୋଜନା । ଏଥିରେ ୧୫ରୁ ୩୫ ବର୍ଷର ପୁରୁଷ ଓ ମହିଳାମାନଙ୍କୁ ଶିକ୍ଷା ଦିଆଯାଏ । ଏହି ବୟସର ଲୋକଙ୍କ ଶାରୀରିକ ଓ ମାନସିକ ଶକ୍ତି ଦୃଢ଼ ଓ ସଚେତନ ଥାଏ । ଏମାନେ ଶିକ୍ଷା ଲାଭ କରି ନିଜର ଓ ଦେଶର ବିକାଶ ଏବଂ ଉନ୍ନତି କରିପାରିବାର ସମ୍ଭାବନା ବେଶୀ । ଏହି ଯୋଜନା ଅନୁଯାୟୀ ନିରକ୍ଷର ଲୋକ ସାକ୍ଷର ହେବା ସଙ୍ଗେ ସଙ୍ଗେ ତାଙ୍କର କର୍ତ୍ତବ୍ୟ, ଦାୟିତ୍ୱ ଓ ଦାବୀ ସମ୍ବନ୍ଧରେ ଜ୍ଞାନ ଲାଭ କରନ୍ତି । ଅଧିକ ଉପାର୍ଜନ ପନ୍ଥା ଜାଣି ପାରନ୍ତି ଏବଂ ଆମ ଦେଶରେ ଜୀବନର ମୂଲ୍ୟବୋଧ, ପରମ୍ପରା, ସଂସ୍କୃତି ଏବଂ ଜାତୀୟ ସଂହତି ବିଷୟରେ ଧାରଣା କରିପାରନ୍ତି । ଏଥି ନିମନ୍ତେ ଉପଯୁକ୍ତ ବହିପତ୍ର ଓ ଶିକ୍ଷା ଉପକରଣର ବ୍ୟବସ୍ଥା କରାଯାଇଛି ।

ଲୋକେ ସୁବିଧା ଅନୁସାରେ ପ୍ରତିଦିନ ୨।୩ ଘଣ୍ଟା ପାଇଁ ଜନଶିକ୍ଷା-କେନ୍ଦ୍ରକୁ ଆସନ୍ତି । ସାକ୍ଷରତା ଲାଭ କରିସାରିବା ପରେ ସାକ୍ଷରତାକୁ ଉଜ୍ଜୀବିତ କରି ରଖିବା ପାଇଁ ପରବର୍ତ୍ତୀ ଶିକ୍ଷା ବା Continuing Educationର ବ୍ୟବସ୍ଥା ଅଛି । ବହିପତ୍ର, ଶିକ୍ଷା ଉପକରଣ ଓ ତାଲିମ ସ୍ତର ରାଜ୍ୟ ସାଧନ କେନ୍ଦ୍ର ବା State Resource Centre ବହନ କରନ୍ତି ।

ଏହି ସାକ୍ଷରତା ଯୋଜନାଟି ଗୋଟିଏ ଜାତୀୟ ଗଣଆନ୍ଦୋଳନର ରୂପ ନେଇଛି । ଏହି ଜନ ଶିକ୍ଷା କାର୍ଯ୍ୟକ୍ରମ ସରକାର ଓ ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା କାର୍ଯ୍ୟକାରୀ ହେଉଛି । ଏତଦ୍‌ବ୍ୟତୀତ ହାଇସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କୁ ଏହି ମହାନ୍ ଜାତୀୟ କାର୍ଯ୍ୟରେ ଜଡ଼ିତ କରାଯାଇଛି । ନୀତି ନିର୍ଦ୍ଧାରଣ ଓ ତତ୍ତ୍ୱାବଧାରଣ ପାଇଁ ଗୋଟିଏ Literacy Mission (ଲିଟରାସି ମିଶନ) ହୋଇଛି । ଜାତୀୟ ସ୍ତରରେ ପ୍ରଧାନମନ୍ତ୍ରୀ ଓ ରାଜ୍ୟ ସ୍ତରରେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏହି ମିଶନ କାର୍ଯ୍ୟ କରୁଅଛି । କେନ୍ଦ୍ର ସ୍ତରରେ ଲିଟରାସି ମିଶନର ମହାନିର୍ଦ୍ଦେଶକ ଓ ରାଜ୍ୟ ସ୍ତରରେ ଜନଶିକ୍ଷା ନିର୍ଦ୍ଦେଶକ ଜନଶିକ୍ଷାର ତଦାରଖ, ନିୟନ୍ତ୍ରଣ ଓ ପରିଚାଳନା କରନ୍ତି ।

ଏକ ବିକାଶଶୀଳ ଦେଶର ବିଭିନ୍ନ ସମ୍ବଳ ମଧ୍ୟରେ ମାନବ ସମ୍ବଳ ପ୍ରଧାନ । ଏହି ମାନବ ସମ୍ବଳର ବିକାଶରେହିଁ ସାମୂହିକ ବିକାଶ ନିହିତ । ସାକ୍ଷରତା ମାନବ ସମ୍ବଳ ବିକାଶର ଅସଲ ଚାବିକାଠି ।

ଆମେ ସାଧାରଣତଃ ଦେଖି, ଶୁଣି ଓ ପଢ଼ି ବହୁତ ଖବର ଅନ୍ତର ରଖୁ ଏବଂ ସେଥିରୁ ଆବଶ୍ୟକମତେ ଶିକ୍ଷା ଲାଭ କରୁ । ଏହିପରି ଖବର ଅନ୍ତର ରଖି ଜ୍ଞାନର ପରିସର ବଢ଼ାଇବା ପାଇଁ ବହୁ ପ୍ରକାର ମାଧ୍ୟମ ଅଛି । ସଭା-ସମିତି, ରେଡ଼ିଓ, ଟେଲିଭିଜନ, ଖବର କାଗଜ ପତ୍ର ପତ୍ରିକା ଓ ନାନା ସାଂସ୍କୃତିକ କାର୍ଯ୍ୟକ୍ରମ ହେଲା ମୁଖ୍ୟତଃ କେତେଗୁଡ଼ିଏ ମାଧ୍ୟମ ଏବଂ କ୍ଲବ ଆଲୋଚନା ଚକ୍ର ଓ ପୁସ୍ତକାଳୟ ଇତ୍ୟାଦି ଦ୍ୱାରା ମଧ୍ୟ ମନୁଷ୍ୟର ଜ୍ଞାନ ବର୍ଦ୍ଧିତ ହୁଏ । ଆନୁଷ୍ଠାନିକ ଶିକ୍ଷା ଅଭାବରେ ଏହିପରି ଶିକ୍ଷା ଆମ ଜୀବନରେ ବହୁ କାମ ଦିଏ ଏବଂ ଏହା ମଧ୍ୟ ଆନୁଷ୍ଠାନିକ ଶିକ୍ଷାକୁ ବଳିଷ୍ଠ କରେ । ଏହିପରି ଶିକ୍ଷାକୁ ଅନୌପଚାରିକ କୁହାଯାଏ ।

## ପ୍ରାକ୍ ବିଦ୍ୟାଳୟ ଶିକ୍ଷାର ଭିତ୍ତିଭୂମି

ଜନ୍ମ ହେବା ପରେ ପରେ ଶିଶୁର ଶିକ୍ଷା ଆରମ୍ଭ ହୋଇଯାଏ । କ୍ରମେ କ୍ରମେ ସେ ପିଇବା, ଖାଇବା, ଦେଖିବା, ଶୁଣିବା, ଉତ୍ତାପ ଓ ଶୀତଳତାକୁ ବାରିପାରିବାରେ ଅଭ୍ୟସ୍ତ ହୋଇଯାଏ ଏବଂ ତାର ପରିବେଶକୁ ଚିହ୍ନିପାରେ । ଶିଶୁର ଶାରୀରିକ ବିକାଶ ସଙ୍ଗେ ସଙ୍ଗେ ମାନସିକ ବିକାଶ ଘଟେ ।

ଶିଶୁକୁ ୩ ବର୍ଷ ହେଲାବେଳକୁ ଯେ ପରିଚାର, ଘରଦ୍ୱାର, ଘରବାର, ପାଇପଡ଼ଶା, ସାଙ୍ଗସୁଖ, ତାର ବ୍ୟବହାର୍ଯ୍ୟ ପଦାର୍ଥ, ପଶୁପକ୍ଷୀ, ଗଛପତ୍ର, ରଙ୍ଗ, ସ୍ୱାଦ, ବଡ଼ସାନ ଓ ଆକାର ପ୍ରକାର ସହ ଅନେକାଂଶରେ ପରିଚିତ ହୋଇଯାଇଥାଏ । ସ୍ନେହ, କ୍ରୋଧ, ହର୍ଷ, ବିଷାଦ, ଲୋଭ, ଈର୍ଷା ଓ ସୌନ୍ଦର୍ଯ୍ୟ ଆଦି ଅନୁଭବ କରି କେତେକ ପରିମାଣରେ ଭାଷା ଓ ବିଶେଷ କରି ଅଙ୍ଗଭଙ୍ଗୀ ଓ କାର୍ଯ୍ୟକଳାପ ମାଧ୍ୟମରେ ବ୍ୟକ୍ତ କରିପାରେ । ମୋଟ ଉପରେ କହିବାକୁ ଗଲେ ପ୍ରାକ୍ ବିଦ୍ୟାଳୟ ସ୍ତରକୁ ଆସିଲାବେଳକୁ ଶିଶୁର ବ୍ୟକ୍ତିତ୍ୱର ବିକାଶ ଘଟୁଥାଏ ।

ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିକ୍ଷକ ଓ ଶିକ୍ଷୟିତ୍ରୀଙ୍କ ଦାୟିତ୍ୱ ହେଲା ଶିଶୁର ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ବିକାଶ, ଯଥା – ଶାରୀରିକ, ମାନସିକ ବା ବୌଦ୍ଧିକ, ସାମାଜିକ ଓ ଆବେଗିକ ବିକାଶ ଘଟାଇବାରେ ସହାୟକ ହେବା । ଏଥିପାଇଁ ଶିକ୍ଷକ ଶିକ୍ଷୟିତ୍ରୀ-ଙ୍କର କେତେକ ମୌଳିକ ଗୁଣ ଓ ଚରିତ୍ରବୃତ୍ତି ଥିବା ଅତୀବ ଆବଶ୍ୟକ ଏବଂ ତାଙ୍କର କେତେଗୁଡ଼ିଏ skill ବା କୌଶଳ ଅବଲମ୍ବନ କରିବାର ଯୋଗ୍ୟତା ଥିବା ମଧ୍ୟ ବାଞ୍ଛନୀୟ । ତାହା ହେଲେ ସେ ଶିଶୁର ଅନ୍ତର୍ନିହିତ ଶକ୍ତିର ବିକାଶ ଦିଗରେ ସହାୟକ ହୋଇପାରିବେ ।

ଶିକ୍ଷକ ଶିକ୍ଷୟିତ୍ରୀ ବୃନ୍ଦ କୁଶଳୀ ତଥା କାର୍ଯ୍ୟଦକ୍ଷ ହେବେ କିପରି ? ଶିଶୁ ମା' ପାଖରେ ବଢ଼େ । ମାଆ ଛୁଆକୁ କେତେ ଭଲ ନପାଏ ? କିନ୍ତୁ ଛୁଆଟିଏ ମା'କୁ ଅତି ବିରକ୍ତ କଲେ ବେଳେବେଳେ ମା' ତାକୁ ମାରନ୍ତି । ଛୁଆଟି କାନ୍ଦେ; କିନ୍ତୁ ମା'ର କାନିକୁ ଜାବୁଡ଼ି କରି ଧରିଥାଏ । ଆମେ ବାହାର ଲୋକ ମିଠେଇ ବା ଖେଳନା ଦେଇ ଯେତେ ଡାକିଲେ ମଧ୍ୟ ଛୁଆଟି ମା'କୁ ଛାଡ଼ି ଆମ ପାଖକୁ ଆସେ ନାହିଁ । ଏପରି ହୁଏ କାହିଁକି ?

ଶିଶୁ ଭଲ କରି ଜାଣେ ଯେ, ମା' ହିଁ ତାର ଆଶ୍ରୟସ୍ଥଳ । ମା' ହିଁ ତାର ନିରାପତ୍ତାର ସ୍ଥଳ । ମା' ତାକୁ ଖାଇବାକୁ ଦିଏ, ଗେଲ କରେ ଓ ପ୍ରାଣଦେଇ ଭଲ ପାଏ । ମା' ପାଖରେ ଶିଶୁ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ କରେ, ତାର ମନର କଥା ନାନା ଢଙ୍ଗରେ ବ୍ୟକ୍ତ କରେ । ସୁତରାଂ Pre. School ବା ପ୍ରାକ୍ ପ୍ରାଥମିକ କେନ୍ଦ୍ରର ଶିକ୍ଷକଙ୍କୁ ମା'ଙ୍କ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପଡ଼ିବ ।

ଶିକ୍ଷକ ବିନା ଦ୍ୱିଧାରେ ଶିଶୁମାନଙ୍କର ମୁଣ୍ଡ କୁଣ୍ଡାଇଦେବା, ତାଙ୍କର ନଖ କାଟି ଦେବା, ଦାନ୍ତ ଘଷେଇ ଦେବା, ପରିଷ୍କାରପରିଚ୍ଛନ୍ନ କରାଇଦେବା, ତାଙ୍କ ସଙ୍ଗେ ଖେଳିବା ଏବଂ ତାଙ୍କୁ କୋଳ କରିବା ଆଦି ସ୍ୱାଭାବିକ ଭାବେ କରିବା ସର୍ବଦା ଓ ସର୍ବଥା ଗ୍ରହଣୀୟ । ଅସଲ କଥା ହେଲା, ଶିକ୍ଷକ ଶିଶୁମାନଙ୍କୁ ମା'ଙ୍କ ଭଳି ସ୍ନେହ କରିବାକୁ ଚେଷ୍ଟିତ ହେବେ ଓ ତାଙ୍କ ସଙ୍ଗେ ନିବିଡ଼ଭାବେ ମିଶିଯିବେ । ଶିକ୍ଷକ ଶିଶୁମାନଙ୍କ ସଙ୍ଗେ ତାଳି ମାରିବେ, ଗାଇବେ, ନାଚିବେ ଓ ଖେଳିବେ । ତା'ହେଲେ ଶିଶୁମାନେ ଶିକ୍ଷକଙ୍କୁ ଭଲ ପାଇବେ ଏବଂ ତାଙ୍କ ନିକଟରେ ସ୍ୱଚ୍ଛନ୍ଦ ଆତ୍ମପ୍ରକାଶ କରିବେ । ତେବେ ଯାଇ ଶିଶୁମାନଙ୍କର ବିକାଶ ସାଧନ ଦିଗରେ ଶିକ୍ଷକଙ୍କର ଚେଷ୍ଟା ସହଜ ଓ ସଫଳ ହେବ ।

ପିଲାଙ୍କୁ ଭୟ ପ୍ରଦର୍ଶନ ବା ମାରଧର କଲେ ସେମାନଙ୍କର Inhabition ବା ନିବୃତ୍ତି ଆସିଯାଏ । ସେମାନେ ମୌନ ରହନ୍ତି । କିଛି କହନ୍ତି ନାହିଁ କି କରନ୍ତି ନାହିଁ । ଶିକ୍ଷକଙ୍କ ସହ ସହଯୋଗ ବିଚ୍ଛିନ୍ନ ହୁଏ । ସୁତରାଂ ଶିଶୁକୁ ଭଲ ପାଇବା ଏବଂ ସେମାନଙ୍କୁ ସବୁ ପ୍ରକାର ସ୍ୱାଧୀନତା ଦେବା ଉଚିତ୍ । ଶିକ୍ଷକବୃନ୍ଦ ଅସୀମ ଧୈର୍ଯ୍ୟର ଅଧିକାରୀ ହେବା ଏକାନ୍ତ ବାଞ୍ଛନୀୟ । ନିଜ ଗୃହ ଅପେକ୍ଷା ପ୍ରାକ୍-ବିଦ୍ୟାଳୟ କେନ୍ଦ୍ରଟି ଶିଶୁପାଇଁ ଅଧିକ ସୁଖକର ଓ ଆମୋଦଦାୟକ ହେବା ଉଚିତ୍ । ଏ ଦିଗରେ ଶିକ୍ଷକ ବିଶେଷ ଧ୍ୟାନ ଦେବେ ।

ଶିକ୍ଷକ ଶିଶୁମାନଙ୍କର ବାପ-ମା ଓ ପରିବାର ସହିତ ସମ୍ପର୍କ ରଖିବେ । ସାମୟିକ ଭାବେ ପରିବାରକୁ ଯାଇ ଶିଶୁର ଭଲ ମନ୍ଦ, ଦିହପା ଓ ପରିଷ୍କାର ପରିଚ୍ଛନ୍ନତା ସମ୍ବନ୍ଧେ ବାପମାଙ୍କୁ ବୁଝାଇବେ ଓ ସେମାନଙ୍କ ସହ ଆଲୋଚନା କରିବେ । ତାଙ୍କ ଆଗରେ ଶିଶୁ ପ୍ରତି ସ୍ନେହ ପ୍ରଦର୍ଶନ କରିବେ ଓ ତାର ପ୍ରଶଂସା କରିବେ । ତା ହେଲେ ବାପ ମା ଓ ଶିଶୁଙ୍କ ସହ ଆତ୍ମୀୟତା ବୃଦ୍ଧି ପାଇବ ଓ ଶିକ୍ଷକଙ୍କଠାରେ ସେମାନଙ୍କର ବିଶ୍ୱାସ ଜନ୍ମିବ ।

ଶିକ୍ଷକଙ୍କର ବିଦ୍ୟାଳୟ କାର୍ଯ୍ୟ ସହଜ ହୋଇଯିବ । ଆଉ ଗୋଟିଏ ବଡ଼ କଥା ହେଲା ଶିକ୍ଷକ ଶିକ୍ଷୟିତ୍ରୀଙ୍କର ନିଜ ଉପରେ ଏବଂ ପ୍ରାକ୍-ବିଦ୍ୟାଳୟର କାର୍ଯ୍ୟାବଳୀ ଉପରେ ପୂରା ବିଶ୍ୱାସ ରହିବା ଦରକାର । ସଫାଇ, ଖେଳଗୀତ, ଅଭିନୟ, ଗଳ୍ପ କଥନ, ହସ୍ତକର୍ମ, ଚିତ୍ରାଙ୍କନ ଓ ପ୍ରକୃତି ପର୍ଯ୍ୟବେକ୍ଷଣ ଦ୍ୱାରା ଶିଶୁ ଯେ ଶିକ୍ଷା ପାଉଛି

ଏବଂ ତାର ବିକାଶ ହେଉଛି ଏ ବିଷୟରେ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ବିଶ୍ୱାସ ଓ ହୃଦ୍‌ବୋଧ ରହିବା ଅତ୍ୟନ୍ତ ଆବଶ୍ୟକ । ଏହି ସବୁ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁ ତାର ଅଙ୍ଗପ୍ରତ୍ୟଙ୍ଗ ଓ ଇନ୍ଦ୍ରିୟଗୁଡ଼ିକର ସମନ୍ୱୟ ଯେ ବହୁତ କଥା ଶିଖିପାରେ ଏବଂ ଜୀବନରେ ଅଗ୍ରଗତି କରିପାରେ । ଏଥିପାଇଁ ଉଦ୍‌ବୃଦ୍ଧ ହେଲେ ଯାଇ ଶିକ୍ଷକଙ୍କର ଶିକ୍ଷାଦାନ ସଫଳ ହୋଇପାରିବ ।

ତଳେ ବା କାଗଜରେ ନାନାପ୍ରକାର ରେଖା ଗାରଆଗାର କଲେ, ବ୍ରସ୍‌ରେ ଚିତ୍ର ଅଙ୍କନ କଲେ ଓ ମାଟି ଚକଟି ମନ ମୁତାବକ କିଛି ତିଆରି କଲେ ଶିଶୁର କଳ୍ପନା, ସୃଜନ ଶକ୍ତି ଓ ସୌନ୍ଦର୍ଯ୍ୟବୋଧର ବିକାଶ ଘଟେ ଏବଂ ତାର ଅଙ୍ଗୁଳିଗୁଡ଼ିକ ଭବିଷ୍ୟତରେ ଲେଖିବା ପାଇଁ ଅଜାଣତରେ ତିଆରି ହୋଇଯାଆନ୍ତି । ଗଳ୍ପ କଥନ ଦ୍ୱାରା ଶିଶୁର କଳ୍ପନା ଶକ୍ତିର ବିକାଶ ହୁଏ । ଭାଷା ଜ୍ଞାନ ହୁଏ । ସେ ନିଜକୁ ଭାଷା ମାଧ୍ୟମରେ ବ୍ୟକ୍ତ କରିବାକୁ ଶିଖେ । ଖେଳ କରିଆରେ ଶିଶୁର ଶାରୀରିକ ଓ ମାନସିକ ବିକାଶ ହୁଏ । ଶୃଙ୍ଖଳା ଜ୍ଞାନ ଆସେ ଓ ସେ ନେତୃତ୍ୱ ନେବାକୁ ଶିଖେ । ସେହିପରି ଗୀତ ନାଚ ଦ୍ୱାରା ଶୃଙ୍ଖଳା ଭାଷା ଓ ସଙ୍ଗୀତ ପ୍ରତି ଅଭିରୁଚି ଜାଗ୍ରତ ହୁଏ ଇତ୍ୟାଦି ।

ଏହି ସବୁ ଶିକ୍ଷାମୂଳକ ତତ୍ତ୍ୱ ଶିକ୍ଷକ ଶିକ୍ଷୟିତ୍ରୀମାନେ ନିଜେ ହୃଦୟଙ୍ଗମ କଲେ ଏ ସମ୍ବନ୍ଧରେ ଅଭିଭାବକମାନଙ୍କର ହୃଦ୍‌ବୋଧ କରାଇପାରିବେ ।

ପ୍ରତି ବର୍ଷ ମଝିରେ ମଝିରେ ବାଲ ମେଳା କରି ଛୁଆମାନଙ୍କର ଗୀତ ନାଚ ଅଭିନୟ ହସ୍ତ-କର୍ମ, ଶିକ୍ଷା ଉପକରଣ ଆଦିର ପ୍ରଦର୍ଶନ କରି ପାରିଲେ ଅଭିଭାବକ-ମାନେ ଛୁଆମାନଙ୍କର ଶାରୀରିକ ଓ ମାନସିକ ବିକାଶର ଆଭାସ ପାଇପାରିବେ ଏବଂ ଏହା ପାଠ ବୋଲି ଉପଲବ୍ଧି କରିପାରିବେ ।

## ପ୍ରାକ୍ ବିଦ୍ୟାଳୟ ଶିକ୍ଷାର ଭୂମିକା

ଆମ ଦେଶରେ ପାଞ୍ଚ ବର୍ଷ ପୂରିଗଲେ ପିଲାଙ୍କର ପ୍ରଥମ ଶ୍ରେଣୀରେ ନାମ ଲେଖାଯାଏ । ଅଳ୍ପ ବୟସରେ କୋମଳମତି ଶିଶୁ ହଠାତ୍ ବିଦ୍ୟାଳୟର କଠୋର ପରିବେଶରେ ପ୍ରବେଶ କରି ନିଜକୁ ଖାପ ଖୁଆଇ ଚଳିବାକୁ କଷ୍ଟକର ବୋଧ କରେ । ଅତ୍ୟଧିକ ଶୃଙ୍ଖଳା ଓ ଲେଖାପଢ଼ା ଶିଶୁ ଉପରେ ଅବାଞ୍ଛିତ ଶାରୀରିକ ଓ ମାନସିକ

ଗ୍ରୁପ ସୃଷ୍ଟି କରେ । ଶିଶୁର ବିଦ୍ୟାଳୟ ଜୀବନ ବିରସ ଓ କଷ୍ଟକର ବୋଧ ହୁଏ । ସେଥିପାଇଁ ପୃଥିବୀର ଉନ୍ନତ ଦେଶମାନଙ୍କରେ ୬।୭ ବର୍ଷ ନ ପୂରିଲେ ଆନୁଷ୍ଠାନିକ ଶିକ୍ଷା ଆରମ୍ଭ ହୁଏ ନାହିଁ । ମନସ୍ତାତ୍ତ୍ୱିକଙ୍କ ମତରେ ଲେଖାପଢ଼ାର ଅତ୍ୟଧିକ ଗ୍ରୁପ ହେତୁ ଅଳ୍ପ ବୟସ୍କ ଶିଶୁର ଶାରୀରିକ ଓ ମାନସିକ ବିକାଶ ଖର୍ବ ହୁଏ । ସେଥିପାଇଁ ଅଧିକାଂଶ ଦେଶରେ ପ୍ରାକ୍ ବିଦ୍ୟାଳୟ ଓ ନର୍ସରୀ ସ୍କୁଲ (Nursery School)ର ବ୍ୟବସ୍ଥା ଅଛି । ଆମ ଦେଶରେ ଏବେ ବଡ଼ ବଡ଼ ସହରମାନଙ୍କରେ ବହୁତ ପ୍ରାକ୍ ବିଦ୍ୟାଳୟ କେନ୍ଦ୍ର ଦେଖା ଦେଲଣି । Pre-School ବା ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ବହୁବିଧ ବିକାଶ ଘଟିଥାଏ । ତାର ଶାରୀରିକ ଓ ମାନସିକ ସାବଧାନତା ଆସିଥାଏ । ଶିଖିବା ଓ ଜାଣିବା ପ୍ରତି ଯଥେଷ୍ଟ ଚେତନା ଜାଗ୍ରତ ହୋଇଥାଏ । ଭାଷା ଓ ଗଣିତରେ କିଛି କିଛି ବ୍ୟାବହାରିକ ଜ୍ଞାନ ଜନ୍ମିଥାଏ । ତେଣୁ ପ୍ରାଥମିକ ବିଦ୍ୟାଳୟ ସ୍ତରରେ ସେ ଅନାୟାସରେ ଅଗ୍ରଗତି କରେ । ସେଥିପାଇଁ ପ୍ରାକ୍-ବିଦ୍ୟାଳୟ ଶିକ୍ଷାକୁ School readiness programme ବା ବିଦ୍ୟାଳୟ ଶିକ୍ଷା ପାଇଁ ପ୍ରସ୍ତୁତିର ସୋପାନ ବୋଲି କୁହାଯାଏ ।

ଆମ ଗାଁ ଗଣ୍ଡାରେ ବିଶେଷତଃ ଆଦିବାସୀ ଅଞ୍ଚଳରେ ଶିଶୁମାନେ ବିଦ୍ୟାଳୟକୁ ନାନା ଅଭାବ ଅସୁବିଧା ହେତୁ ଯାଆନ୍ତି ନାହିଁ । ଛୋଟ ଛୋଟ ବାଳକ ବାଳିକାମାନେ ମଧ୍ୟ ବାପ ମା'ଙ୍କୁ ଦୈନନ୍ଦିନ କାର୍ଯ୍ୟରେ କିଛି କିଛି ସାହାଯ୍ୟ କରନ୍ତି । ଯେଉଁ ପିଲମାନେ ସ୍କୁଲକୁ ଯାଆନ୍ତି, ସେମାନଙ୍କ ପାଠପଢ଼ା ପାଇଁ ଅର୍ଥହୀନ ଓ କଷ୍ଟକର ହୋଇପଡ଼େ । ସେମାନଙ୍କର ମାତୃଭାଷା ଅଲଗା ଓ ସେମାନେ ସାଧାରଣତଃ ଗରୀବ । ସୁତରାଂ ସେମାନେ ସ୍କୁଲ ପରିତ୍ୟାଗ କରନ୍ତି । ଆଶା କରାଯାଏ ଏହି ଅଞ୍ଚଳମାନଙ୍କରେ ଛୁଆମାନଙ୍କୁ ପ୍ରାକ୍ ବିଦ୍ୟାଳୟରେ ତାଲିମ୍ ଦେଲେ ସେମାନେ ସ୍କୁଲ ପାଠ ପ୍ରତି ଆକୃଷ୍ଟ ହେବେ । ଆନନ୍ଦରେ ସ୍କୁଲକୁ ଯିବେ ଏବଂ ସହଜରେ ପାଠ ଧରିପାରିବେ ।

ଏବେ ସରକାରୀ ଯୋଜନା ଅନୁସାରେ ଆମ ଦେଶରେ କେତେକ ପ୍ରକ୍ ବିଦ୍ୟାଳୟ କେନ୍ଦ୍ର ଖୋଲିଗଲଣି । ଆମ ଓଡ଼ିଶାରେ କେତେଗୁଡ଼ିଏ ସ୍ୱେଚ୍ଛାସେବୀ ସଂସ୍ଥା ପ୍ରତ୍ୟେକ ଅଳ୍ପ ସଂଖ୍ୟକ କେନ୍ଦ୍ର ଖୋଲି ୩ ବର୍ଷରୁ ୬ ବର୍ଷର ଶିଶୁମାନଙ୍କର ବିକାଶ ସାଧନରେ ଲଗି ପଡ଼ିଛନ୍ତି ଏବଂ ଦେଖାଗଲଣି ଏହି କେନ୍ଦ୍ରଗୁଡ଼ିକର ଶିଶୁମାନେ ପ୍ରାଥମିକ ବିଦ୍ୟାଳୟରେ ଆଶାଜନକ ଅଗ୍ରଗତି ସାଧନ କରିପାରୁଛନ୍ତି । ସୁତରାଂ ପ୍ରାକ୍ ପ୍ରାଥମିକ ଶିକ୍ଷା କ୍ରମେ କ୍ରମେ ଲୋକପ୍ରିୟ ହେଉଛି ।

ଏହି କେନ୍ଦ୍ରମାନ ଖୋଲିବା ପାଇଁ ନିର୍ଦ୍ଦିଷ୍ଟ ଫର୍ମରେ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶକଙ୍କ ଜରିଆରେ କେନ୍ଦ୍ର ସରକାରଙ୍କୁ ପଠାଯାଏ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ କେନ୍ଦ୍ର ସରକାରଙ୍କଠାରୁ ସିଧାସଳଖ ଅନୁଦାନ-ଅର୍ଥ ଲାଭ କରନ୍ତି । ରାଜ୍ୟ ଶିକ୍ଷା ଗବେଷଣା ପ୍ରଶିକ୍ଷଣ ପରିଷଦ ବା (S. C. E. R. T.) । ଏହି ପ୍ରାକ୍ ବିଦ୍ୟାଳୟ ଶିକ୍ଷକ ତାଲିମ୍‌ର ଭାର ନିଅନ୍ତି ଏବଂ ଏସବୁ ସମ୍ବନ୍ଧେ ସକଳ ବୈଷୟିକ ଦିଗ୍‌ଦର୍ଶନ ଦିଅନ୍ତି ।

ଏହି ସମ୍ପର୍କରେ ଅଙ୍ଗନବାଡ଼ି କେନ୍ଦ୍ର ସମ୍ବନ୍ଧରେ ଆମର କିଛି ଜାଣିବା ଉଚିତ୍ ହେବ ।

Integrated Children's Development Scheme ବା ସମନ୍ୱିତ ଶିଶୁ ବିକାଶ ଯୋଜନା—

ସଂକ୍ଷେପରେ ଏହାକୁ I. C. D. S. କୁହନ୍ତି । ଆମ ଓଡ଼ିଶାରେ ଏହି ଯୋଜନା ବର୍ତ୍ତମାନ ବହୁତ ଗୁଡ଼ିଏ ବ୍ଲକ୍‌ରେ କାର୍ଯ୍ୟକାରୀ ହେଉଛି । ପ୍ରତ୍ୟେକ ବ୍ଲକ୍‌ରେ ପ୍ରାୟ ୧୦୦ଟି କରି ଅଙ୍ଗନବାଡ଼ି କେନ୍ଦ୍ର ଅଛି । କେବଳ ମହିଳାମାନେ ଏହି କେନ୍ଦ୍ରଗୁଡ଼ିକର ଦାୟିତ୍ୱରେ ରହନ୍ତି । ସେମାନଙ୍କର କାର୍ଯ୍ୟ ବହୁମୁଖୀ । ସେମାନେ ଗ୍ରାମରେ ବିଶେଷ କରି ଗରୀବ ଶ୍ରେଣୀର ପରିବାର ମଧ୍ୟରେ ଗର୍ଭବତୀ ଓ ପ୍ରସୂତି ମହିଳା ଓ ଶିଶୁମାନଙ୍କର ତାଲିକା କରି ସେମାନଙ୍କର ସ୍ୱାସ୍ଥ୍ୟର ଯତ୍ନ ନିଅନ୍ତି । ସେମାନଙ୍କୁ ଖାଦ୍ୟପେୟ, ସ୍ୱାସ୍ଥ୍ୟ, ପରିଷ୍କାର ପରିଚ୍ଛନ୍ନତା, ରୋଗ ପ୍ରତିଷେଧକ ଟୀକା ଆଦି ବିଷୟରେ ଶିକ୍ଷା ଦିଅନ୍ତି । ଏସବୁ ଦିଗରେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ବା Primary Health Centre (P. H. C.) ର ମହିଳା ସ୍ୱାସ୍ଥ୍ୟ କର୍ମୀ ତାଙ୍କୁ ସକଳ ପ୍ରକାର ସାହାଯ୍ୟ କରନ୍ତି ଏବଂ ଗର୍ଭବତୀ ଓ ଶିଶୁମାନଙ୍କର ସକଳ ପ୍ରକାର ପ୍ରତିଷେଧକ ଟୀକା ଦେବାର ବ୍ୟବସ୍ଥା କରନ୍ତି ଏବଂ ଏହାଛଡ଼ା ଅଙ୍ଗନବାଡ଼ି ପରିଚାଳନା ହେଲା ଅଙ୍ଗନବାଡ଼ି କର୍ମୀଙ୍କର ମୁଖ୍ୟକାର୍ଯ୍ୟ । ୩ରୁ ୬ବର୍ଷ ବୟସର ଶିଶୁମାନେ ସକାଳେ ୩ ଘଣ୍ଟା ପାଇଁ ଏହି କେନ୍ଦ୍ରକୁ ଆସନ୍ତି । ସେମାନଙ୍କର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ରଖାଯାଏ । ସେମାନେ ପ୍ରାର୍ଥନା କରନ୍ତି ଏବଂ ଗୀତ, ନାଚ, ଖେଳ ଓ ହାତ କାମ ଜରିଆରେ ବହୁତ କଥା ଶିଖନ୍ତି । ସେଠାରେ ଦୋଳି, ବାଲିଗଦା ଓ ନାନା ଖେଳ ଉପକରଣ ଓ କଣ୍ଢେଇ ଆଦି ଥାଏ । ସେମାନଙ୍କୁ ଏହି କେନ୍ଦ୍ରରେ ମଧ୍ୟ ଖାଇବା ପାଇଁ ସରକାରଙ୍କର ସାହାଯ୍ୟ ଦିଆଯାଇଥାଏ ।

ବଡ଼ ବଡ଼ ସହର ଓ ଶିଳ୍ପାଞ୍ଚଳମାନଙ୍କରେ Creche (କ୍ରେଶ୍) ଦ୍ୱାରା ଶିଶୁ ପାଳନ କେନ୍ଦ୍ର ବା ବାଲମନ୍ଦିରମାନ ଅଛି । ବାହାରକୁ ଯାଇ ଅଫିସ୍ ଓ କଳକାରଖାନାରେ କାମ କରୁଥିବା ମହିଳାମାନେ ତାଙ୍କର ଛୋଟ ଛୋଟ ଛୁଆମାନଙ୍କୁ ଏହି ବାଲ ମନ୍ଦିରମାନଙ୍କରେ ଛାଡ଼ି ଦେଇ କର୍ମକ୍ଷେତ୍ରକୁ ଚାଲିଯାଆନ୍ତି । ଫେରିଲାବେଳେ ଛୁଆମାନଙ୍କୁ ସଙ୍ଗରେ ଧରି ଘରକୁ ଯାଆନ୍ତି । ଏହି କେନ୍ଦ୍ରଗୁଡ଼ିକରେ ୩ ମାସରୁ ପ୍ରାୟ ୩ ବର୍ଷର ଛୁଆଙ୍କୁ ରଖାଯାଇପାରେ । ବୟସ ଅନୁପାତରେ ସେମାନଙ୍କ ଗାଧୋଇବା ଖାଇବା ପିଇବା, ଖେଳିବା ଓ ଶୋଇବା ଆଦି ସକଳ ଆବଶ୍ୟକତା ପୂରଣ ଦିଗରେ ଏଠାରେ ସମସ୍ତ ବନ୍ଦୋବସ୍ତ କରାଯାଇଥାଏ । ଏହି କେନ୍ଦ୍ରମାନ ବାପା ମା'ଙ୍କୁ ସ୍ୱଚ୍ଛନ୍ଦରେ କାମ କରିବାକୁ ସୁଯୋଗ ଦେବା ସଙ୍ଗେ ସଙ୍ଗେ ଶିଶୁମାନଙ୍କର ସାଧାରଣ ବିକାଶ ଦିଗରେ ଦୃଷ୍ଟି ଦିଅନ୍ତି । ସାଧାରଣତଃ ନର୍ସ ଓ ଧାଈମାନେ ଏହି କେନ୍ଦ୍ର ଗୁଡ଼ିକର ଦାୟିତ୍ୱରେ ରହନ୍ତି ।

ଖଣି ଓ ଶିଳ୍ପାଞ୍ଚଳ ଏବଂ କୋଠାବାଡ଼ି ବା ପୋଲ ନିର୍ମାଣ କରାଯାଇଥିବା ଅଞ୍ଚଳରେ ଅନେକ ସ୍ତ୍ରୀ ପୁରୁଷ ଅସ୍ଥାୟୀ ଭାବରେ ମୂଲିଆ କାମ କରନ୍ତି । ସେମାନେ ଯାଯାବର ଜୀବନଯାପନ କରନ୍ତି । ଅର୍ଥାତ୍ ଗୋଟିଏ ଯାଗାରେ ନିର୍ମାଣ କାର୍ଯ୍ୟ ଶେଷ ହେଲେ ସେମାନେ ପାଖଆଖରେ ଅନ୍ୟ ଗୋଟିଏ କର୍ମସ୍ଥଳୀକୁ ଚାଲିଯାଆନ୍ତି । ସେମାନଙ୍କର ଜୀବନକୁ ସୁଗମ କରିବା ପାଇଁ କମ୍ପାନୀ ବା ସ୍ୱେଚ୍ଛାସେବୀ ସଂସ୍ଥାମାନେ ଏବେ mobile creche ବା ଭ୍ରାମ୍ୟମାଣ ବାଲ ମନ୍ଦିର ଏବଂ ଭ୍ରାମ୍ୟମାଣ ଅଙ୍ଗନ-ବାଡ଼ି ପରିଚାଳନା କରିବାର ଦେଖାଯାଏ ।

## ଗୋଷ୍ଠୀ ଏବଂ ଶିକ୍ଷାନୁଷ୍ଠାନ

ଶିକ୍ଷାର ଅର୍ଥ, 'କାର୍ଯ୍ୟ' ଏବଂ 'ଲକ୍ଷ୍ୟ' ସମ୍ପର୍କରେ ଆଲୋଚନା କଲାବେଳେ ଆମେ ଶିକ୍ଷାନୁଷ୍ଠାନ ଓ ଗୋଷ୍ଠୀ ମଧ୍ୟରେ ସମ୍ପର୍କ ବିଷୟରେ ଊଣା ଅଧିକେ ଧାରଣା କରିସାରିଛୁ । ବର୍ତ୍ତମାନ ଏ ସମ୍ପର୍କରେ ବିଶଦ୍ ଆଲୋଚନା କରାଯାଇପାରେ ।

ଶିକ୍ଷା ଏକ ସାମାଜିକ ପ୍ରକ୍ରିୟା ଏବଂ ଏକ ସାମାଜିକ ବ୍ୟବସ୍ଥା । ଏହା ସାମାଜିକ ପରିବେଶରେ ହିଁ ଅନୁଷ୍ଠିତ ହୁଏ । ବାସ୍ତବରେ ଦେଖିବାକୁ ଗଲେ ଶିକ୍ଷାନୁଷ୍ଠାନ ଏକ ସାମାଜିକ ଉଦ୍ଭାବନ । ଯେପରି ପ୍ରତ୍ୟେକ ଉଦ୍ଭାବନର ମୂଳ

କୌଣସି ନା କୌଣସି ଆବଶ୍ୟକତା (**Necessary is the mother of invention**) ସେପରି ଏହି ଉଦ୍ଭାବନଟି ମଧ୍ୟ ସାମାଜିକ ଆବଶ୍ୟକତାରୁ ଉଦ୍ଭବ ହୋଇଛି । ଅର୍ଥାତ୍ ଶିକ୍ଷାନୁଷ୍ଠାନ ସମାଜର ଆବଶ୍ୟକତାକୁ ହିଁ ପୂରଣ କରିଆସୁଛି । ଏହା ଏକ ସାମାଜିକ ଅନୁଷ୍ଠାନ ।

ସମାଜ ଉଦ୍ଭାବନ କରିଥିବା ପ୍ରତ୍ୟେକଟି ଅନୁଷ୍ଠାନ ସମାଜର ସଭ୍ୟମାନଙ୍କୁ ସାମାଜିକୀକରଣରେ ସାହାଯ୍ୟ କରିଥାଏ । ଅଧିକାଂଶ ସମୟରେ ପ୍ରତ୍ୟକ୍ଷ ଭାବରେ ଏବଂ ବେଳେବେଳେ ପରୋକ୍ଷ ଭାବରେ । ବର୍ତ୍ତମାନର ଶିକ୍ଷାନୁଷ୍ଠାନ (ବିଶେଷତଃ ବିଦ୍ୟାଳୟ) ଏ ଦିଗରେ ପ୍ରଧାନ ଭୂମିକା ଗ୍ରହଣ କରିଛି ଏବଂ ଶିକ୍ଷାନୁଷ୍ଠାନଗୁଡ଼ିକ ସେମାନଙ୍କର ସାମଗ୍ରିକ କାର୍ଯ୍ୟକ୍ରମ ଦ୍ୱାରା ଏହି ଦାୟିତ୍ୱଟି ବେଶ୍ ଇଚ୍ଛାକୃତ ଭାବରେ ତୁଲେଇ ଆସୁଛନ୍ତି । ବାସ୍ତବ କ୍ଷେତ୍ରରେ ଦେଖିବାକୁ ଗଲେ ପ୍ରଚଳିତ ସମାଜରେ ଯାହାକିଛି 'ଠିକ୍' କିମ୍ବା 'ଭୁଲ' ବୋଲି ବିଗ୍ଭର କରାଯାଉଥାଏ ସେସବୁ ଧାରଣା ଏବଂ ମନୋବୃତ୍ତି ଶିକ୍ଷାନୁଷ୍ଠାନରେ ପ୍ରତିଫଳିତ ହୋଇଥାଏ ଏବଂ ପରିପୁଷ୍ଟ ହୋଇଥାଏ । ଅନେକଙ୍କ ମତରେ ଶିକ୍ଷାନୁଷ୍ଠାନ ଉପରେ କ୍ରମେ କେତେକ ନୂଆ ନୂଆ ଦାୟିତ୍ୱ ନ୍ୟସ୍ତ କରାଯାଉଥିବାରୁ ଶିକ୍ଷାନୁଷ୍ଠାନ ଏକ କ୍ଷୁଦ୍ର ସମାଜ (mini society)ରେ ରୂପାନ୍ତରିତ ହେବା ଆବଶ୍ୟକ । ଶିକ୍ଷାନୁଷ୍ଠାନର କାର୍ଯ୍ୟକ୍ରମ ମଧ୍ୟରେ ଗୋଷ୍ଠୀର ବାସ୍ତବ ଅନୁଭୂତି ପାଇଁ ବ୍ୟବସ୍ଥା ରହିବା ଦରକାର । ପ୍ରକୃତ ପକ୍ଷେ ଶିକ୍ଷାନୁଷ୍ଠାନ ଓ ଗୋଷ୍ଠୀ ଭିତରେ ଏପରି ସମ୍ପର୍କ ରହିବା ଦରକାର ଯେପରି କି ଗୋଷ୍ଠୀଜୀବନର ବାସ୍ତବ ଅନୁଭୂତି ଓ ସମସ୍ୟା ଶିକ୍ଷାନୁଷ୍ଠାନର ଶିକ୍ଷାକାର୍ଯ୍ୟକ୍ରମକୁ ପ୍ରଭାବିତ କରିବ ଏବଂ ଶିକ୍ଷାନୁଷ୍ଠାନରେ ଶିକ୍ଷାର୍ଥୀମାନଙ୍କ ଦ୍ୱାରା ଲବ୍ଧଜ୍ଞାନ, ଦକ୍ଷତା, ମୂଲ୍ୟବୋଧ ଇତ୍ୟାଦି ଗୋଷ୍ଠୀର ବିଭିନ୍ନ ସମସ୍ୟା ସମାଧାନରେ ସହାୟକ ହୋଇପାରିବ । ଶ୍ରେଣୀଗୃହରେ ଶିକ୍ଷା ଲାଭ କରିବା ଯେପରି ମୁଖ୍ୟ ବିଷୟ, ବିଭିନ୍ନ ସାମାଜିକ ଓ ବାସ୍ତବ କର୍ମକ୍ଷେତ୍ରରେ ଭାଗନେବା ମଧ୍ୟ ସେପରି ଏକ ମୁଖ୍ୟ ବିଷୟରୂପେ ବିବେଚିତ ହେବା ଦରକାର । ଏହି ଦୁଇଟି ବିଷୟରେ ସମଗୁରୁତ୍ୱ ଉପଲବ୍ଧି ନକରିବା ଯାଏଁ ଶିକ୍ଷାର୍ଥୀ (ଶିଶୁଙ୍କର ଚରିତ୍ର ଗଠନ ଓ ବ୍ୟକ୍ତିତ୍ୱ ବିକାଶ (**Peroonality Development**) ସମ୍ଭବପର ହୁଏ ନାହିଁ । ଏହା ନ ହେଲେ ତାତ୍ତ୍ୱିକ ଆଲୋଚନା ଓ ବାସ୍ତବ ଜୀବନ ମଧ୍ୟରେ ଅନେକ ପାର୍ଥକ୍ୟ ରହିଯିବ । ଫଳରେ ଶିକ୍ଷା ଶେଷ କଲି ପରେ ଶିକ୍ଷାର୍ଥୀ ସମାଜରେ ନିଜକୁ ଖାପଖୁଆଇ ଚଳିପାରିବ ନାହିଁ ।

ଶିକ୍ଷାନୁଷ୍ଠାନ ପରିବାର ପରି ଏକ ସାମାଜିକ ସଂସ୍ଥା । ଏହାର ଏକ ନିଜସ୍ୱ ସଂଗଠନ ଓ ଆଚାର ବ୍ୟବହାର ପ୍ରଣାଳୀ ଅଛି । ଏହି ପ୍ରଣାଳୀ ଅନୁସାରେ ଏହା ସହିତ ସମ୍ପୃକ୍ତ ସମସ୍ତ ବ୍ୟକ୍ତିଙ୍କର ଅର୍ଥାତ୍ ଶିକ୍ଷାର୍ଥୀ, ଶିକ୍ଷକ, ଶିକ୍ଷା ପ୍ରଶାସକ ଏ ସମସ୍ତଙ୍କର ଆଚରଣ ନିୟନ୍ତ୍ରିତ ହୋଇଥାଏ । ସଂକ୍ଷେପରେ କହିବାକୁ ଗଲେ ଶିକ୍ଷାନୁଷ୍ଠାନ ଅନ୍ତର୍ଭୁକ୍ତ ସମସ୍ତ ବ୍ୟକ୍ତି ନିଜ ନିଜର ସାମାଜିକ ଭୂମିକା ଗ୍ରହଣ କରି ତଦନୁଯାୟୀ କାର୍ଯ୍ୟକଲେ ଏହି ଆନୁଷ୍ଠାନିକ ସଙ୍ଗଠନ ଓ ବ୍ୟବସ୍ଥା ଯଥାଯଥ ଚାଲିପାରିବ ।

ଏହି ଅନୁଷ୍ଠାନରେ ଦୈନନ୍ଦିନ କାର୍ଯ୍ୟକ୍ରମ ଏପରି ହେବା ଦରକାର ଯେପରି କି ଶିକ୍ଷାର୍ଥୀଙ୍କ ମନରେ ଗଭୀର ଆତ୍ମପ୍ରତ୍ୟୟ ଜାତ ହେବ । ଏହି ଅନୁଷ୍ଠାନର ପରିବେଶ ସୁଖପ୍ରଦ ହେଲେ ଏବଂ ସେମାନେ ଏହାକୁ ଏକ ଗୃହ ପରିବେଶ ପରି ମନେକରି ପାରିଲେ ଏହା ସମ୍ଭବ ହୋଇପାରିବ । ଶିକ୍ଷକ ଓ ଶିକ୍ଷା ପ୍ରଶାସକମାନଙ୍କ ବ୍ୟବହାରରୁ ଶିକ୍ଷାର୍ଥୀମାନଙ୍କର ଅନ୍ତରଃ ବିଶ୍ୱାସ ଜାତ ହେବା ଆବଶ୍ୟକ ଯେ ପ୍ରକୃତରେ ଶିକ୍ଷକ ଓ ପ୍ରଶାସକମାନେ ଶିକ୍ଷାର୍ଥୀମାନଙ୍କର ସୁବିଧା, ଅସୁବିଧା, ଆବଶ୍ୟକତା ଇତ୍ୟାଦି ବୁଝିବାକୁ ଆଗ୍ରହୀ । ଆହୁରି ମଧ୍ୟ ସେମାନଙ୍କର ବିଶ୍ୱାସ ହେବା ଦରକାର ଯେ ଏହି ଅନୁଷ୍ଠାନରେ ସେମାନଙ୍କର ନ୍ୟାଯ୍ୟ ସ୍ଥାନ ସୁରକ୍ଷିତ ଅଛି ।

ବିଶିଷ୍ଟ ପାଶ୍ଚାତ୍ୟ ଶିକ୍ଷାବିତ୍ ଟି.ପି. ନନ୍ 'ବିଦ୍ୟାଳୟ'କୁ ଏକ ବୃହତ୍ତର ତଥା ମହତ୍ତ୍ୱପୂର୍ଣ୍ଣ ସମାଜ ବୋଲି ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି, "ଗୋଟିଏ ଦେଶ ବା ଜାତିର ବିଦ୍ୟାଳୟଗୁଡ଼ିକ ତାହାର ଜୀବନର ଏକ ଅଙ୍ଗ ବୋଲି ଆମେ କହିପାରିବା । ଏହି ଅଙ୍ଗ ଏକ ସ୍ୱତନ୍ତ୍ର କର୍ମ ସମ୍ପାଦନ କରେ; ଅର୍ଥାତ୍ ଏହା ଜାତିର ଆଧ୍ୟାତ୍ମିକ ବଳକୁ ସୁଦୃଢ଼ କରେ, ଐତିହାସିକ ନିରବଚ୍ଛିନ୍ନତାକୁ ରକ୍ଷା କରେ, ଅତୀତର କୃତିତ୍ୱଗୁଡ଼ିକୁ ସୁରକ୍ଷା କରେ ଏବଂ ଭବିଷ୍ୟତକୁ ତଦନୁଯାୟୀ ନିୟନ୍ତ୍ରିତ କରେ ।" ଏକ ସର୍ବଶ୍ରେଷ୍ଠ ଆଦର୍ଶ ସମାଜରୂପେ ଏହାହିଁ ବିଦ୍ୟାଳୟର ପ୍ରକୃତ ଚିତ୍ର । ବାସ୍ତବିକ ଏହାହିଁ ଶିକ୍ଷାନୁଷ୍ଠାନର ସ୍ୱରୂପ ।

ଶିକ୍ଷାନୁଷ୍ଠାନକୁ ଏପରି ଏକ ସମାଜରେ ପରିଣତ କରିବାକୁ ହେଲେ ବାସ୍ତବ କ୍ଷେତ୍ରରେ ଏହାର କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟ ତଦନୁରୂପ ହେବା ଉଚିତ । ସାମାଜିକ ଚେତନା, ସହଯୋଗ ମନୋବୃତ୍ତି ଆଦିକୁ ବଢ଼ାଇବା ପାଇଁ କର୍ମକୁଶଳତାକୁ ସୁଦକ୍ଷ

କରିବା ପାଇଁ ଶିକ୍ଷାନୁଷ୍ଠାନର ସ୍ପଷ୍ଟ ଅବଦାନ ରହିଛି । ଏଥିପାଇଁ ଶିକ୍ଷାନୁଷ୍ଠାନର ଦୈନନ୍ଦିନ କାର୍ଯ୍ୟକ୍ରମରେ ଶିକ୍ଷାର୍ଥୀ ଏହି ଅନୁଭୂତି ଗୁଡ଼ିକ ହାସଲ କରିବାପାଇଁ ସୁଯୋଗ ରହିବା ଏକାନ୍ତ ବାଞ୍ଛନୀୟ ।

ଶିକ୍ଷାର 'ଅର୍ଥ' ସମ୍ପର୍କରେ ଆଲୋଚନା କଲାବେଳେ ଆମେ ଜାଣିଛୁ ଯେ ଏକ ଗୋଷ୍ଠୀ ହିସାବରେ ବଞ୍ଚିବା ଏବଂ ବିକଶିତ ହେବାର ଫଳାଫଳ ହିଁ ଶିକ୍ଷା । ଗୋଷ୍ଠୀ ହିଁ ଶିକ୍ଷା ପାଇଁ ଏକ ଅନୁକୂଳ ଅଥବା ଫଳପ୍ରଦ ପରିବେଶ ଦେଇପାରିବ । ଏଣୁ ଶିକ୍ଷାନୁଷ୍ଠାନରେ ଶିକ୍ଷାର୍ଥୀମାନଙ୍କର ବିକାଶ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବା ଦରକାର ଯେପରିକି ସେମାନେ ସ୍ଥାନୀୟ ଗୋଷ୍ଠୀ ସମ୍ପଦକୁ ଆବିଷ୍କାର କରିପାରିବେ । ତାର ଉତ୍ତରୋତ୍ତର ବିକାଶରେ ସହାୟକ ହୋଇପାରିବେ ଏବଂ ତାକୁ ଯଥାଯଥ ଭାବରେ ଉପଯୋଗ କରିପାରିବେ । ଏଥିପାଇଁ ଶିକ୍ଷାନୁଷ୍ଠାନର ଏକ ମହାନ୍ ଦାୟିତ୍ୱ ହେଲ ଯେପରି ଏହା ସ୍ଥାନୀୟ ସାମାଜିକ ଓ ପ୍ରାକୃତିକ ପରିବେଶକୁ ଆଧାରରୂପେ ଗ୍ରହଣ କରି ଶିକ୍ଷାର୍ଥୀମାନଙ୍କ ପାଇଁ ଉପଯୁକ୍ତ ଶିକ୍ଷା କାର୍ଯ୍ୟକ୍ରମ ପ୍ରସ୍ତୁତ କରିବେ । ଏହା କରିବା ସକାଶେ ସ୍ଥାନୀୟ ସାମାଜିକ ଓ ପ୍ରାକୃତିକ ପରିବେଶକୁ ଉତ୍ତମରୂପେ ଅନୁଧ୍ୟାନ କରିବାକୁ ପଡ଼ିବ । ଯେଉଁ ଶିକ୍ଷାନୁଷ୍ଠାନ ଗୋଷ୍ଠୀର ଆବଶ୍ୟକତା, ଆଗ୍ରହ ଓ ସମସ୍ୟାଗୁଡ଼ିକୁ ଉତ୍ତମରୂପେ ବୁଝିପାରିବ ସେହି ଶିକ୍ଷାନୁଷ୍ଠାନ ହିଁ ଗୋଷ୍ଠୀର ଉତ୍ତମ ସେବା କରିପାରିବ । ଶିକ୍ଷାବିତ୍ ସାଇଫ୍ରେଡ଼ିଆନ୍ କହିଛନ୍ତି—'ଲୋକଙ୍କର ବିଦ୍ୟାଳୟ ସେମାନଙ୍କର ଆବଶ୍ୟକତା ଏବଂ ସମସ୍ୟା ଉପରେ ଆଧାରିତ ହେବା ଆବଶ୍ୟକ । ବିଦ୍ୟାଳୟର କାର୍ଯ୍ୟକ୍ରମ ସେମାନଙ୍କ ଉନ୍ନତ ଜୀବନ ପାଇଁ ଉଦ୍ଦିଷ୍ଟ ହେବା ଦରକାର । ଏହାର କାର୍ଯ୍ୟପ୍ରଣାଳୀ ସେଇ ଲୋକଙ୍କର କାର୍ଯ୍ୟପ୍ରଣାଳୀର ଅନୁରୂପ ହେବା ଦରକାର । ଗୋଷ୍ଠୀ ଜୀବନର ପ୍ରାକୃତିକ ପରିବେଶର ମହତ୍ତ୍ୱ ଏବଂ ବିଭବ ବିଦ୍ୟାଳୟରେ ପ୍ରତି-ଫଳିତ ହେବା ଆବଶ୍ୟକ ।

ଶିକ୍ଷାକୁ ଯଦି ଆମେ ଏକ ସାମାଜିକ ପ୍ରକ୍ରିୟା ଏବଂ ସମଗ୍ର ସମାଜର ଏକ ପରିବର୍ତ୍ତନଶୀଳ ଅଂଶ ରୂପେ ଗ୍ରହଣ କରୁଥାଉଁ ତେବେ ଶିକ୍ଷାନୁଷ୍ଠାନ ଅନ୍ତର୍ଗତ କ୍ରିୟାକଳାପ ଏବଂ ସମାଜର ପ୍ରାକୃତିକ ପରିବେଶରେ ଶିଶୁର ଅନୁଭୂତିକୁ ଏକୀଭୂତ କରିବାକୁ ହେବ । ଶିକ୍ଷାର ଏ ଦୁଇଟି କ୍ଷେତ୍ର କେବଳ ଯେ ପରସ୍ପର ପରିପୂରକ ତା' ନୁହେଁ ; ଏ ଦୁଇଟି ଏକୀକୃତ ମଧ୍ୟ । ଏହି ଏକକତ୍ୱକୁ ଲାଭ କରାଯାଇପାରିବ, ଯଦି ଶିକ୍ଷାନୁଷ୍ଠାନ ସିଧାସଳଖ ଭାବରେ ଗୋଷ୍ଠୀ ଜୀବନରେ ଅଂଶଗ୍ରହଣ କରିବ ଏବଂ

ଯିବ ଗୋଷ୍ଠୀ ସମସ୍ୟାଗୁଡ଼ିକର ସମାଧାନ ଦିଗରେ ଏହି ଅନୁଷ୍ଠାନ ଦିଗ୍‌ଦର୍ଶନ ଦେଇପାରିବ । କେବଳ ଗୋଷ୍ଠୀର ସାମାଜିକ ଏବଂ ଅର୍ଥନୈତିକ ପରିବେଶରେ ଶିଶୁଗଣ / ଶିକ୍ଷାର୍ଥୀଗଣ ଶିକ୍ଷାନୁଷ୍ଠାନରେ ଯେଉଁ ଜ୍ଞାନ ଓ ଅନୁଭୂତି ହାସଲ କରିବେ ତାହା ବାସ୍ତବ ଜୀବନରେ ପରୀକ୍ଷିତ ହୋଇପାରିବ । ତାହାହିଁ ହେବ ଅର୍ଥପୂର୍ଣ୍ଣ ଶିକ୍ଷା— ତାହାହିଁ ହେବ ପ୍ରକୃତ ଶିକ୍ଷା ।

ପ୍ରାଚୀନ କାଳରେ ଭାରତରେ ସ୍ଥାନୀୟ ଗୋଷ୍ଠୀ ସମସ୍ତ ଶିକ୍ଷା-କାର୍ଯ୍ୟକ୍ରମର ଆୟୋଜନ ଏବଂ ପରିଚାଳନା କରୁଥିଲେ । ସ୍ଥାନୀୟ ଗୋଷ୍ଠୀ ପାରମ୍ପରିକ ଭାବରେ ଶିକ୍ଷାନୁଷ୍ଠାନଗୁଡ଼ିକର ପୃଷ୍ଠପୋଷକତା କରୁଥିଲେ । କିନ୍ତୁ ସମୟର ଗତି ଅନୁସାରେ ଶିକ୍ଷାକ୍ଷେତ୍ର ବିସ୍ତାର ଲାଭ କଲା । ସେଗୁଡ଼ିକର ଦାୟିତ୍ୱ ପଡ଼ିଲା ସରକାର (ଶାସକ)ଙ୍କ ଉପରେ । କ୍ରମେ ଶିକ୍ଷାନୁଷ୍ଠାନରୁ ଗୋଷ୍ଠୀ ସମ୍ପର୍କ କୋହଳ ହେଲା । ବସ୍ତୁତଃ, ଗୋଷ୍ଠୀ ଏବେ ଶିଶୁମାନଙ୍କର ଶିକ୍ଷା ସକାଶେ ସମ୍ପୂର୍ଣ୍ଣରୂପେ ସରକାରଙ୍କ ମୁଖାପେକ୍ଷୀ ହେଲେ । ଏପରିକି ଶିଶୁର ଶିକ୍ଷା ପାଇଁ ପାରିବାରିକ ଦାୟିତ୍ୱ କଥା ଗୋଷ୍ଠୀ ପ୍ରାୟ ଭୁଲିଯାଇଛି । ଏହି କାରଣରୁ ହିଁ ଶିକ୍ଷାର ଗୁଣାତ୍ମକ ବିକାଶରେ ବହୁ ସମସ୍ୟା ଉପୁଜିଛି । ଶିକ୍ଷାନୁଷ୍ଠାନର ସଂଖ୍ୟାତ୍ମକ ବିକାଶ ସଙ୍ଗେ ସଙ୍ଗେ ଏହି ସମସ୍ୟା ବେଶ୍ ଗୁରୁତର ହୋଇଯାଇଛି । ଏବେ ଶିକ୍ଷାନୁଷ୍ଠାନ ସହିତ ଗୋଷ୍ଠୀ ସମ୍ପର୍କ ଲାଭ ପରିପ୍ରେକ୍ଷୀରେ ବ୍ୟାପକ ଚିନ୍ତା ଓ କାର୍ଯ୍ୟକ୍ରମ ପାଇଁ ବିଭିନ୍ନ ମହଲରେ ବିଚାର ଆଲୋଚନା ଓ ଯୋଜନା ଚାଲିଛି । ଶିକ୍ଷାନୁଷ୍ଠାନ ସହିତ କେତେ ପ୍ରକାରର ଗୋଷ୍ଠୀ ସମ୍ପର୍କ ହାସଲ କରାଯାଇପାରିବ ସେକଥା ଆମର ବର୍ତ୍ତମାନର ଜାତୀୟ ଶିକ୍ଷାନୀତି (National Policy on Education) ୧୯୮୬ରେ ନିର୍ଦ୍ଧାରଣ କରାଯାଇଛି ; ଯଥା—

(୧) ସ୍ୱତଃ ପ୍ରବୃତ୍ତ ଗୋଷ୍ଠୀ ସହଯୋଗ (Voluntary Cooperation),
(୨) ପ୍ରେରଣାତ୍ମକ ଗୋଷ୍ଠୀ ସହଯୋଗ (Motivated Cooperation) ଏବଂ
(୩) ବାଧ୍ୟତାମୂଳକ ଗୋଷ୍ଠୀ ସହଯୋଗ (Compulsions Cooperation) ।

ଏପରି ସହଯୋଗ ଲାଭ ପାଇଁ ଅନେକ ଯୁକ୍ତି ଦର୍ଶାଯାଉଛି । ଯେପରିକି—

(୧) କ୍ରମବର୍ଦ୍ଧିଷ୍ଣୁ ଶିକ୍ଷାନୁଷ୍ଠାନ ପାଇଁ ସରକାରୀ ସମ୍ବଳ ବ୍ୟତିରେକେ କିଛି କିଛି ସ୍ଥାନୀୟ ସମ୍ବଳର ଆବଶ୍ୟକତା ରହୁଛି । ଗୋଷ୍ଠୀ ସହଯୋଗ ବିନା ଏହା ମିଳିବା ସମ୍ଭବ ନୁହେଁ ।

(୨) ଶିକ୍ଷାନୁଷ୍ଠାନକୁ ସ୍ଥାନୀୟ ଗୋଷ୍ଠୀ ସାହାଯ୍ୟ କଲେ କ୍ରମେ ଶିକ୍ଷାନୁଷ୍ଠାନର କାର୍ଯ୍ୟକ୍ରମ ପ୍ରତି ଗୋଷ୍ଠୀ ଆଗ୍ରହୀ ହେବେ ।

(୩) ଗୋଷ୍ଠୀ ଶିକ୍ଷାନୁଷ୍ଠାନ ପ୍ରତି ଆଗ୍ରହୀ ହେଲେ ଶିକ୍ଷାନୁଷ୍ଠାନ ସ୍ଥାନୀୟ ଗୋଷ୍ଠୀର ଆବଶ୍ୟକତା, ଆଶା ଓ ଆକାଂକ୍ଷା ପ୍ରତି ସଜାଗ ରହିବ ଏବଂ ସେଗୁଡ଼ିକ ଯେପରି ଶିକ୍ଷାନୁଷ୍ଠାନର କାର୍ଯ୍ୟକ୍ରମରେ ପ୍ରତିଫଳିତ ହେବ ସେଥିପାଇଁ ଯତ୍ନ ନେବ ।

ଗୋଷ୍ଠୀ ଏବଂ ଶିକ୍ଷାନୁଷ୍ଠାନ ମଧ୍ୟରେ ସୁସମ୍ପର୍କ ସ୍ଥାପନ ଏକ ଦ୍ୱିପାକ୍ଷିକ ବ୍ୟାପାର । ସମ୍ପର୍କ ସ୍ଥାପନ ପାଇଁ ଉଭୟ ତରଫରୁ ସମାନ ଆଗ୍ରହ ସୃଷ୍ଟି ହେବା ଦରକାର । ବର୍ତ୍ତମାନ ଆମ ଦେଶରେ ଯାବତୀୟ ବିକାଶମୂଳକ କାର୍ଯ୍ୟକ୍ରମରେ ଗୋଷ୍ଠୀ ସହଯୋଗ ମିଳିବା ନିମନ୍ତେ ବହୁଭାବରେ ଚେଷ୍ଟା ଚାଲିଛି । ଦେଖିବାକୁ ଗଲେ ପ୍ରତିଟି ବିକାଶମୂଳକ କାର୍ଯ୍ୟକ୍ରମ ଗୋଷ୍ଠୀର ବିକାଶ ନିମନ୍ତେ ଉଦ୍ଦିଷ୍ଟ । ଯାହା ନିମନ୍ତେ ବିକାଶ କାର୍ଯ୍ୟକ୍ରମ ଉଦ୍ଦିଷ୍ଟ ସେ ଯଦି ଆଗ୍ରହୀ ନୁହେଁ, ସେ ଯଦି ସେଇ କାର୍ଯ୍ୟରେ ସହଯୋଗ ନ କରେ ତେବେ ବିକାଶମୂଳକ କାର୍ଯ୍ୟକ୍ରମରୁ ସଫଳତା ମିଳିପାରିବ ନାହିଁ । ଏଣୁ ଏ ବାବଦରେ ସହଯୋଗ କରିବାକୁ ବହୁଭାବେ ପ୍ରେରଣା ଦେବା ଦରକାର । ଏଥିପାଇଁ ସବୁ ବିକାଶମୂଳକ କାର୍ଯ୍ୟ ନିମନ୍ତେ ବର୍ତ୍ତମାନ ସର୍ବନିମ୍ନ ସ୍ତରରେ (grass-root level) ଯୋଜନା ପ୍ରସ୍ତୁତ କରିବାକୁ ପଦକ୍ଷେପ ନିଆଯାଉଛି । ଗ୍ରାମ ପଞ୍ଚାୟତ, ପାରମ୍ପରିକ ଅନୁଷ୍ଠାନ, ଗ୍ରାମ ସଭା ସମିତି, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବ୍ୟବସାୟିକ ସଂସ୍ଥା, ଔଦ୍ୟୋଗିକ ଓ ବାଣିଜ୍ୟିକ ଅନୁଷ୍ଠାନ, ଶ୍ରମିକ ସଂଗଠନମାନଙ୍କୁ ଉକ୍ତ ଯୋଜନା ପ୍ରସ୍ତୁତି କାର୍ଯ୍ୟରେ ସମ୍ପୃକ୍ତ କରାଇ ଗୋଷ୍ଠୀ ସହଯୋଗ ହାସଲ କରିବାକୁ ପଦକ୍ଷେପ ନିଆଯାଉଛି । ଶିକ୍ଷାନୁଷ୍ଠାନ ଓ ଗୋଷ୍ଠୀ ମଧ୍ୟରେ ସୁସମ୍ପର୍କ ସ୍ଥାପନ ପାଇଁ ଉକ୍ତ ସଂସ୍ଥାମାନେ ସହାୟ ହେବାର ଅବକାଶ ରହିଛି ।



# ଚତୁର୍ଥ ଅଧ୍ୟାୟ

## ଶିଶୁ ଓ ତାର ସ୍ୱାସ୍ଥ୍ୟ

ସ୍ୱାସ୍ଥ୍ୟ ପିଲାର ଏକ ଜନ୍ମଗତ ଅଧିକାର । ଏହା ତାହାର ଦେହ, ମନ ଓ ପରିବେଶ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଏବଂ ଏଥିସକାଶେ ଖୋଲା ପବନ, ସୂର୍ଯ୍ୟକିରଣ, ଖାଦ୍ୟ, ବିଶ୍ରାମ, ନିଦ୍ରା, ପରିଷ୍କାର ପରିଚ୍ଛନ୍ନତା ତଥା ଭଲ ଅଭ୍ୟାସ ନିହାତି ଦରକାର ।

### ସ୍ୱାସ୍ଥ୍ୟର ସଂଜ୍ଞା

ସ୍ୱାସ୍ଥ୍ୟର ସଂଜ୍ଞାକୁ ବିଭିନ୍ନ ପ୍ରକାରର ବର୍ଣ୍ଣନା କରାଯାଇପାରେ । କେତେକ ମତ ଦିଅନ୍ତି, ଉପଯୁକ୍ତ ସ୍ୱାସ୍ଥ୍ୟର ଅର୍ଥ ହେଉଛି ରୋଗ ବିହୀନ ଶରୀର । କାରଣ ପିଲାର ଶରୀର ହେଉଛି ଗୋଟିଏ କଳ । କଳ ଭିତରେ ଯେପରି ଅନେକ ଶ୍ରେଷ୍ଠବର୍ତ୍ତ ଯନ୍ତ୍ର ରହି କଳଟିକୁ ଭଲ ଭାବରେ ଚାଲିବାକୁ ସାହାଯ୍ୟ କରୁଥାଏ, ସେହିପରି ପିଲାର ଦେହ ଭିତରେ ବିଭିନ୍ନ କାମ ପାଇଁ ବିଭିନ୍ନ ଯନ୍ତ୍ରମାନ ରହିଅଛି । ଏଥିରୁ କୌଣସି ଗୋଟିଏ ଯନ୍ତ୍ର ଖରାପ ହେଲେ ପିଲାଟି କାମ କରିବାକୁ ଅକ୍ଷମ ହୁଏ ଏବଂ ରୋଗଦ୍ୱାରା ଆକ୍ରାନ୍ତ ହୋଇଛି ବୋଲି ବୁଝାଯାଏ । ଅନ୍ୟମାନଙ୍କ ମତରେ ସ୍ୱାସ୍ଥ୍ୟ ହେଉଛି ପିଲା ଓ ତାହାର ଚତୁଃପାର୍ଶ୍ୱରେ ଥିବା ପରିବେଶର ଉତ୍ତମ ସମଯୋଜନ ଏବଂ ଯେତେବେଳେ ଏହି ସମଯୋଜନରେ ତ୍ରୁଟି ଦେଖାଯାଏ, ସେତେବେଳେ ପିଲାଟିକୁ ରୋଗ ଆକ୍ରାନ୍ତ କରେ । ତେବେ ସ୍ୱାସ୍ଥ୍ୟ ହେଉଛି ଉପଯୁକ୍ତ ଶରୀର, ମନ, ପରିବାର ତଥା ପରିବେଶର ସମିଶ୍ରଣ ; ମାତ୍ର ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (WHO)ର ମତାନୁଯାୟୀ ସ୍ୱାସ୍ଥ୍ୟ ହେଉଛି ସମ୍ପୂର୍ଣ୍ଣ ଶାରୀରିକ, ମାନସିକ ତଥା ସାମାଜିକ ସୁସ୍ଥତା ।

## ଶାରୀରିକ ସୁସ୍ଥତା

ପିଲାର ଶାରୀରିକ ସୁସ୍ଥତା ନିର୍ଭର କରେ ତାହାର ଭଲ ଚେହେରା, ପରିଷ୍କାର ଚର୍ମ, ଉଜ୍ଜଳ ଚକ୍ଷୁ, ଉପଯୁକ୍ତ ନିଦ୍ରା, ଭଲ ଆହାର, ନିୟମିତ ଝାଡ଼ା ପରିସ୍ରା ଇତ୍ୟାଦି । ପ୍ରତ୍ୟେକ ଦିନର ଏହି ନିୟମିତ କାର୍ଯ୍ୟାବଳୀରେ ସାମାନ୍ୟ ତ୍ରୁଟି ଦେଖାଗଲେ ପିଲାର ଶରୀରରେ ପରିବର୍ତ୍ତନ ଦେଖାଯାଏ ଏବଂ ଏହି ପରିବର୍ତ୍ତନ ଆଖିବୃଶିଆ ହେଲେ ପିଲାଟି ଯେକୌଣସି ରୋଗଦ୍ୱାରା ଆକ୍ରାନ୍ତ ହୋଇଛି ବୋଲି ଜଣାପଡ଼େ । ତେବେ ପିଲାର ଶାରୀରିକ ସୁସ୍ଥତା ମାପିବାପାଇଁ ନିୟମିତ ଡାକ୍ତରୀ ପରୀକ୍ଷା, ଖାଦ୍ୟପେୟ ଏବଂ ପରିପୁଷ୍ଟିର ଆବଶ୍ୟକତା ରହିଛି । ଏହାଦ୍ୱାରା ଶରୀରର ସମାନ୍ୟତମ ପରିବର୍ତ୍ତନ ମଧ୍ୟ ସହଜରେ ଜଣା ପଡ଼ିଥାଏ ଏବଂ ପ୍ରଥମରୁ ଏଥିପ୍ରତି ସଜାଗ ହେଲେ ଶାରୀରିକ ସୁସ୍ଥତା ରକ୍ଷା କରିଯାଇପାରିବ ।

## ମାନସିକ ସୁସ୍ଥତା

ଶାରୀରିକ ସୁସ୍ଥତା ଓ ମାନସିକ ସୁସ୍ଥତା ଓତଃପ୍ରୋତ ଭାବରେ ଜଡ଼ିତ । ସୁସ୍ଥ ଶରୀର ମଧ୍ୟରେ ସୁସ୍ଥ ମନର ଏକାନ୍ତ ଆବଶ୍ୟକତା ରହିଛି । ଦୁର୍ବଳ ମନୋଭାବ ଶାରୀରିକ ସୁସ୍ଥତା ଉପରେ ପ୍ରଭାବ ବିସ୍ତାର କରିଥାଏ । ପିଲାଟିର ମାନସିକ ସୁସ୍ଥତା ତାହାର ସ୍ୱାଭାବିକ ହସଖେଳ, ଅନ୍ୟ ପିଲା ସହିତ ମିଳାମିଶି ଚଳିବା ତଥା ଭୟ, ରାଗ, ଈର୍ଷା, ଦ୍ୱେଷ ପ୍ରଭୃତି ଗୁଣଗୁଡ଼ିକ ପାଖରୁ ଦୂରରେ ରହି ନିଜ ଉପରେ ନିଜର କର୍ତ୍ତୃତ୍ୱ ରଖିବା ଉପରେ ନିର୍ଭର କରେ । ଯେତେବେଳେ ପିଲାଟିର ଆଚରଣ ବ୍ୟବହାରରେ ସାମାନ୍ୟ ପରିବର୍ତ୍ତନ ଲକ୍ଷ୍ୟ କରିଯାଏ, ସେତେବେଳେ ପିଲାଟି ମାନସିକ ସୁସ୍ଥତା ହରାଇ ବସିଥାଏ ବୋଲି ଜଣାପଡ଼େ । ମାତ୍ର ମାନସିକ ସୁସ୍ଥତାକୁ ମାପିବାପାଇଁ ଶାରୀରିକ ସୁସ୍ଥତା ପରି କୌଣସି ନିର୍ଦ୍ଦିଷ୍ଟ ମାପକାଠି ନାହିଁ ।

## ସାମାଜିକ ସୁସ୍ଥତା

ପିଲାର ଶାରୀରିକ ତଥା ମାନସିକ ସୁସ୍ଥତା ସାମାଜିକ ପରିବେଶ ଉପରେ ନିର୍ଭର କରେ । ବିଶେଷତଃ ପରିବାରର ଅର୍ଥନୈତିକ ଅବସ୍ଥା ଏହାକୁ ବିଶେଷ ଭାବରେ ପ୍ରଭାବିତ କରିଥାଏ । ଏତଦ୍‌ବ୍ୟତୀତ ପରିବାର ତଥା ଆଖପାଖରେ ଥିବା ଲୋକମାନଙ୍କର

ସ୍ନେହ ଓ ସୌହାର୍ଦ୍ଦ୍ୟ ପିଲର ସାମାଜିକ ସୁସ୍ଥତା ପରିପ୍ରକାଶ ପାଇଁ ବିଶେଷ ଭାବରେ ଦାୟୀ । ଫଳରେ ପିଲଟି ସମାଜର ବିଭିନ୍ନ ପରିସ୍ଥିତି ସହିତ ଖାପ ଖୁଆଇ ଚଳିବାକୁ ପ୍ରଥମରୁ ଚେଷ୍ଟା କରେ ଏବଂ ଜଣେ ସୁନାଗରିକ ରୂପେ ଦଣ୍ଡାୟମାନ ହୁଏ ।

ତେଣୁ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାନୁଯାୟୀ ଯେଉଁ ପିଲ ଉପରୋକ୍ତ ତିନୋଟି, ଯଥା—ଶାରୀରିକ, ମାନସିକ ଓ ସାମାଜିକ ସୁସ୍ଥତାର ଅଧିକାରୀ ତାହାକୁ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟବାନ୍ ବୋଲି କୁହାଯାଏ । ଏହାଦ୍ୱାରା ଦେହ ଓ ମନର ସମ୍ପୂର୍ଣ୍ଣ କାର୍ଯ୍ୟକାରିତା କ୍ଷମତା ଜଣାପଡ଼ିଥାଏ । ଏହି କ୍ଷମତା ଉଣାଅଧିକେ ହ୍ରାସ ପାଇଲେ ସ୍ୱାସ୍ଥ୍ୟ ନଷ୍ଟ ହେଲି ବୋଲି କୁହାଯାଏ । ସ୍ୱାସ୍ଥ୍ୟକୁ ଏକ ପେଣ୍ଡୁଲମ୍ ଦୋଳକ ସହିତ ତୁଳନା କରିଯାଇପାରେ । ଏହା ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଦୋଳାୟିତ ହୁଏ । ଏହାର ଗୋଟିଏ ପାଖ ସର୍ବୋଚ୍ଚ ସ୍ୱାସ୍ଥ୍ୟ ଏବଂ ଅନ୍ୟ ପାଖଟି ସର୍ବନିମ୍ନ ସ୍ୱାସ୍ଥ୍ୟ ଦର୍ଶାଇଥାଏ । ଗୋଟିଏ ପିଲି ସ୍ୱାସ୍ଥ୍ୟବାନ ହେଲେ ଯେ, ସେ ସବୁଦିନ ପାଇଁ ସେହିପରି ସ୍ୱାସ୍ଥ୍ୟବାନ ରହିବ ଏହା କୁହାଯାଇ ନ ପାରେ । କାରଣ ସ୍ୱାସ୍ଥ୍ୟ ସର୍ବଦା ପରିବର୍ତ୍ତନଶୀଳ । ଏହା ବିଭିନ୍ନ ପରିସ୍ଥିତି, ଖାଦ୍ୟପେୟ ଓ ମାନସିକ ଅବସ୍ଥା ଉପରେ ନିର୍ଭର କରେ । ଏତଦ୍‌ବ୍ୟତୀତ ବିଭିନ୍ନ ରୋଗ ମଧ୍ୟ ସ୍ୱାସ୍ଥ୍ୟହାନିର କାରଣ ହୋଇଥାଏ । ତେଣୁ ଏହି ପରିବର୍ତ୍ତିତ ସ୍ୱାସ୍ଥ୍ୟର ବିଭିନ୍ନ ଅବସ୍ଥା ଅନୁଯାୟୀ ଏହାକୁ ନିମ୍ନଲିଖିତ ଉପାୟରେ ବର୍ଣ୍ଣନା କରିଯାଇଥାଏ ।

ସର୍ବୋଚ୍ଚ ସ୍ୱାସ୍ଥ୍ୟ—

—ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ

—ଉତ୍ତମ ସ୍ୱାସ୍ଥ୍ୟ

—ରୋଗଶୂନ୍ୟ ସ୍ୱାସ୍ଥ୍ୟ

ସର୍ବନିମ୍ନ ସ୍ୱାସ୍ଥ୍ୟ—

— ଜଣା ନ ପଡ଼ିଲା ପରି ଦେହ ଖରାପ

—ମଧ୍ୟମ ଦେହ ଖରାପ

—ଭୟଙ୍କର ଦେହ ଖରାପ

—ମୃତ୍ୟୁ

ତେବେ ଉପଯୁକ୍ତ ସ୍ୱାସ୍ଥ୍ୟ ଗଠନ ନିମନ୍ତେ କେତେକ ଉପାଦାନର ଆବଶ୍ୟକତା ରହିଛି ଏବଂ ସେସବୁ ଯଦି ପିଲଟି ଠିକ୍ ଭାବରେ ପାଇପାରେ ତେବେ ସେ ସ୍ୱାସ୍ଥ୍ୟବାନ ହୋଇପାରିବ ଏହା ନିଃସନ୍ଦେହ ।

## ଉପଯୁକ୍ତ ସ୍ୱାସ୍ଥ୍ୟ ପାଇଁ ଆବଶ୍ୟକ ଉପାଦାନ

ପିଲଟି ଯେପରି ସ୍ୱାସ୍ଥ୍ୟବାନ ହେବ ଏହା ପ୍ରତ୍ୟେକ ପିତାମାତା ଚାହାନ୍ତି । ଏହା କେତେକ ନିର୍ଦ୍ଦିଷ୍ଟ ଅବସ୍ଥା ଉପରେ ନିର୍ଭର କରେ । ଏହି ଅବସ୍ଥାଗୁଡ଼ିକ ମଧ୍ୟରୁ କେତେକ ଗର୍ଭାବସ୍ଥାରେ ଥିବା ସମୟରେ ପିଲର ଦେହ ଭିତରେ ପରିପ୍ରକାଶ ହୋଇଥାଏ । ପିଲଟି ଜନ୍ମହେବା ପରେ ତାହାର ଚତୁଃପାର୍ଶ୍ୱରେ ଥିବା ପରିବେଶ ତଥା ପିତାମାତାଙ୍କ ଅର୍ଥନୈତିକ ପରିସ୍ଥିତି ଓ ସେବା ପିଲର ଉପଯୁକ୍ତ ସ୍ୱାସ୍ଥ୍ୟ ଗଠନରେ ସହାୟକ ହୋଇଥାଏ । ସାଧାରଣତଃ ଏହା ନିମ୍ନଲିଖିତ କାରଣଗୁଡ଼ିକ ଉପରେ ପର୍ଯ୍ୟବସିତ ହୋଇଥାଏ ।

୧ । **ମାନବ ଶରୀରତତ୍ତ୍ୱ** (Human Biology)—ପ୍ରତ୍ୟେକ ପିଲର ଶାରୀରିକ ଓ ମାନସିକ ସୁସ୍ଥତା କେତେକାଂଶରେ ଭ୍ରୂଣଅସ୍ଥିର ଅବସ୍ଥାରେ ପିତାମାତାଠାରୁ ଆସିଥିବା ବଂଶ ପିଣ୍ଡ (Gene)ର ଗୁଣ ଅନୁଯାୟୀ ନିର୍ଦ୍ଧାରିତ ହୋଇଥାଏ । ସେଥିପାଇଁ ଆଜିକାଲି ଦେଖାଯାଉଥିବା ରୋଗଗୁଡ଼ିକ ମଧ୍ୟରୁ କେତେକ ରକ୍ତଜନିତ ରୋଗ, ବହୁମୂତ୍ର ତଥା ମାନସିକ ଦୁର୍ବଳତା ଏହି ବଂଶ ପିଣ୍ଡ (Gene)ରୁ ଉତ୍ପତ୍ତି ହୋଇଥାଏ ଏବଂ ପିଲଟି ଜନ୍ମହେବା ଦିନରୁ କିମ୍ବା ୩।୪ ବର୍ଷ ହେବା ପରେ ଏହିସବୁ ରୋଗ ଦ୍ୱାରା ସହଜରେ ଆକ୍ରାନ୍ତ ହୋଇଥାଏ ।

୨ । **ପରିବେଶ**—ହିପୋକ୍ରେଟସ୍ ହେଉଛନ୍ତି ପ୍ରଥମ ବୈଜ୍ଞାନିକ, ଯିଏ କି ରୋଗ ସହିତ ପରିବେଶ ଅର୍ଥାତ୍ ଜଳବାୟୁ, ପାଣି ଓ ପବନର ସମ୍ପର୍କ ବିଷୟରେ ଗବେଷଣା କରିଥିଲେ । ପରବର୍ତ୍ତୀ କାଳରେ ପିଟେନ୍‌କୋଫର୍ ନାମକ ଜର୍ମାନୀ ବୈଜ୍ଞାନିକ ରୋଗ ଓ ପରିବେଶର ସମ୍ପର୍କ ସମ୍ବନ୍ଧରେ ଅନୁଧ୍ୟାନ କରିଥିଲେ । ଆଧୁନିକ ବୈଜ୍ଞାନିକମାନଙ୍କ ମତାନୁଯାୟୀ ପ୍ରାକୃତିକ ପରିବେଶକୁ ରକ୍ଷା କରିପାରିଲେ ଜୀବନ ତଥା ସ୍ୱାସ୍ଥ୍ୟ ସୁରକ୍ଷିତ ହୋଇପାରିବ ।

ପରିବେଶକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଏ । ଯଥା— ଅନ୍ତଃପରିବେଶ ଏବଂ ବହିଃପରିବେଶ । ଅନ୍ତଃପରିବେଶ ହେଉଛି ପ୍ରତ୍ୟେକ ପିଲାର ଦେହ ଭିତରେ ଥିବା କୋଷ, ସ୍ନାୟୁ ଓ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ପ୍ରଭୃତିର କାର୍ଯ୍ୟକାରିତା କ୍ଷମତା । ପିଲାଟି ମା' ପେଟରୁ ଜନ୍ମଲାଭ କଲାପରେ ଯେଉଁ ପରିବେଶ ଭିତରେ ସୁସ୍ଥ-ସବଳ ହୋଇ ବଢ଼ିବାକୁ ଚେଷ୍ଟା କରେ ତାହାକୁ ବହିଃପରିବେଶ କୁହାଯାଏ । ଏହା ସାଧାରଣତଃ ପାଣି, ପବନ ଓ ଖାଦ୍ୟ ଉପରେ ନିର୍ଭର କରେ । ଏତଦ୍‌ବ୍ୟତୀତ କୌଳିକ ବୃତ୍ତି, ଅର୍ଥନୈତିକ, ସାମାଜିକ ଏବଂ ନୈତିକ ପରିବେଶ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଏହା ଦୃଢ଼ ନିଶ୍ଚିତ ଯେ ଉପରୋକ୍ତ ବିଭିନ୍ନ ପରିବେଶ ପିଲାର ଶାରୀରିକ, ମାନସିକ ତଥା ସାମାଜିକ ଉନ୍ନତି ସହିତ ନିବିଡ଼ ଭାବରେ ଜଡ଼ିତ । ଦୂଷିତ ଖାଦ୍ୟ, ପାଣି, ପବନ ଓ ମାଟି ଦୋଷରୁ ପତଳା ଝାଡ଼ା, ଅମାଶୟ, ହଇଜା, ଆନ୍ତ୍ରିକଜ୍ୱର ଇତ୍ୟାଦି ଭାରତ ତଥା ଅନ୍ୟାନ୍ୟ ଉନ୍ନତ ଦେଶମାନଙ୍କରେ ମଧ୍ୟ ଶାରୀରିକ ଅସୁସ୍ଥତାର ମୂଳକାରଣ ରୂପେ ଦେଖାଯାଏ ଏବଂ ଏହାଦ୍ୱାରା ପିଲାମାନେ ଅକାଳ ମୃତ୍ୟୁବରଣ କରିଥାନ୍ତି । ତେଣୁ ପିଲାଟିକୁ ଉପଯୁକ୍ତ ସ୍ୱାସ୍ଥ୍ୟର ଅଧିକାରୀ ହେବାକୁ ହେଲେ ସର୍ବପ୍ରଥମେ ପରିବାର ତଥା ପରିବେଶ ପରିଷ୍କାର ପରିଚ୍ଛନ୍ନ ରଖିବାର ବିଶେଷ ଆବଶ୍ୟକତା ରହିଛି । ତେଣୁ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥା ପରିବେଶ କିପରି ସୁସ୍ଥ ରହିପାରିବ, ସେଥିପାଇଁ ଅଧୁନା ବିଭିନ୍ନ କାର୍ଯ୍ୟପନ୍ଥାମାନ ଗ୍ରହଣ କରିଛନ୍ତି ।

୩ । **ଜୀବନଯାପନ ପ୍ରଣାଳୀ**—ପ୍ରତ୍ୟେକ ପିଲାର ଜୀବନଯାପନ ପ୍ରଣାଳୀ ତାହାର ସ୍ୱାସ୍ଥ୍ୟ ଗଠନରେ ସହାୟକ ହୋଇଥାଏ । ପିଲାଟିର ଶାରୀରିକ ପରିଷ୍କାର ପରିଚ୍ଛନ୍ନତା, ଭଲ ଅଭ୍ୟାସ, ଭଲ ବ୍ୟବହାର ତାହାର ଜୀବନଯାପନ ପ୍ରଣାଳୀକୁ ଶୃଙ୍ଖଳିତ କରିଥାଏ । ଶାରୀରିକ ପରିଷ୍କାର ପରିଚ୍ଛନ୍ନତା ହେଉଛି ପ୍ରତ୍ୟେକ ଦିନ ଗାଧୋଇବା, ଦାନ୍ତଘଷିବା, ନଖ ଓ ବାଳର ଯତ୍ନ ନେବା, ଖାଇବା, ଖେଳିବା, ଶୋଇବା ତଥା ଭଲଗୁଣ ଶିଖିବା ଇତ୍ୟାଦି । ଏଥିରୁ ଯେ କୌଣସି ଗୋଟିକର ଅବହେଳା ହେଲେ ସ୍ୱାସ୍ଥ୍ୟ ନଷ୍ଟ ହେବାର ଲକ୍ଷ୍ୟ କରାଯାଏ । ଉଦାହରଣସ୍ୱରୂପ, ଶରୀର ପ୍ରତ୍ୟେକ ଦିନ ପରିଷ୍କାର ନ କଲେ କାଛୁ, କୁଣ୍ଡିଆ ଇତ୍ୟାଦି ଚର୍ମରୋଗ ଦେଖାଯାଏ । ଦାନ୍ତ ଓ ପାଟିର ଯତ୍ନ ନ ନେଲେ ଦାନ୍ତ ପୋକ ଲାଗିବା, ପାଟିରୁ ଦୁର୍ଗନ୍ଧ ବାହାରିବା ଇତ୍ୟାଦି ଦେଖାଯାଏ ଏବଂ ପରବର୍ତ୍ତୀ କାଳରେ ବିଭିନ୍ନ ପେଟଜନିତ ରୋଗଦ୍ୱାରା ପିଲାଟି ଆକ୍ରାନ୍ତ ହୋଇ ଦୁର୍ବଳ ହୋଇପଡ଼େ । ତେଣୁ ପ୍ରତ୍ୟେକ ପିଲାର

ସୁସ୍ଥତା ଉପରେ ସାମାଜିକ ସ୍ୱାସ୍ଥ୍ୟ ନିର୍ଭର କରେ ଏବଂ ପିଲାଟି କିପରି ସୁସ୍ଥ ସବଳ ରହିପାରିବ ପ୍ରତ୍ୟେକ ସମାଜ ସେଥିପାଇଁ ଉପଯୁକ୍ତ ପନ୍ଥା ନିର୍ଦ୍ଧାରଣ କରିଥାଏ ।

୪ । **ଅର୍ଥନୈତିକ ଅବସ୍ଥା**—ପ୍ରତ୍ୟେକ ସମାଜର ସ୍ୱାସ୍ଥ୍ୟ ତାହାର ଅର୍ଥନୈତିକ ଅବସ୍ଥା ଉପରେ ନିର୍ଭର କରିଥାଏ । ଅର୍ଥନୈତିକ ଅବସ୍ଥାର ଉନ୍ନତି ବିନା ରୋଗଶୂନ୍ୟ ହୋଇ ବହୁତ ଦିନ ବଞ୍ଚିବା ଏକାନ୍ତ ଅସମ୍ଭବ । ଏତଦ୍‌ବ୍ୟତୀତ ଉତ୍ତମ ସ୍ୱାସ୍ଥ୍ୟରକ୍ଷା ମଧ୍ୟ ଦେଶର ରାଜନୈତିକ ପରିସ୍ଥିତି ଉପରେ ନିର୍ଭର କରିଥାଏ । କାରଣ ବିଭିନ୍ନ ଯୋଜନା ମାଧ୍ୟମରେ ସାଧାରଣ ଲୋକ ଯେପରି ସ୍ୱାସ୍ଥ୍ୟ ସେବାର ସଦୁପଯୋଗ କରିପାରନ୍ତି ସେଥିପ୍ରତି ରାଜନୈତିକ ବ୍ୟବସ୍ଥା ଦୃଷ୍ଟି ଦେବା ବିଧେୟ । ଏତଦ୍‌ବ୍ୟତୀତ ଦାରିଦ୍ର୍ୟ ହିଁ ଅସୁସ୍ଥତାର କାରଣ । କାରଣ ଗରିବ ଲୋକମାନେ ପିଲା-ମାନଙ୍କୁ ଉପଯୁକ୍ତ ଖାଦ୍ୟ ଖାଇବାକୁ ଦେଇପାରନ୍ତି ନାହିଁ ଏବଂ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ରହିବା ଫଳରେ ବିଭିନ୍ନ ରୋଗ ଜୀବାଣୁ ସଂସ୍ପର୍ଶରେ ଆସି ସହଜରେ ରୋଗୀ ହୋଇଥାନ୍ତି । ସେଥିପାଇଁ ଗର୍ଭବତୀ ମା' ତଥା ପିଲା ମୃତ୍ୟୁହାର ସାଧାରଣତଃ ଦରିଦ୍ର ଦେଶରେ ବେଶୀ ଦେଖାଯାଏ । ଏହା ବ୍ୟତୀତ ଦାରିଦ୍ର୍ୟ ଯୋଗୁ ପିଲାମାନେ ପାଠପଢ଼ି ଭଲ ମଣିଷ ହେବା ପରିବର୍ତ୍ତେ ନାନାପ୍ରକାର ଅସାମାଜିକ କାର୍ଯ୍ୟରେ **ଲିପ୍ତ** ରହି ଜୀବନ ନଷ୍ଟ କରିଥାନ୍ତି । ୫ ବର୍ଷରୁ କମ୍ ବୟସର ଯେତିକି ପିଲା ଆମ ଦେଶରେ ପ୍ରତିବର୍ଷ ମରନ୍ତି । ସେଥିରୁ ୬୦%ରୁ ୮୦% କେବଳ ଏହି ଦାରିଦ୍ର୍ୟ ଯୋଗୁଁ ଘଟିଥାଏ । ତେଣୁ ଶିଶୁଟି ଯଦି ପ୍ରଥମାବସ୍ଥାରୁ ଉପଯୁକ୍ତ ଖାଦ୍ୟ, ପରିବେଶ ଓ ସ୍ୱାସ୍ଥ୍ୟ-ସେବା ପାଇ ନ ପାରିବ, ତେବେ ସେ ଭବିଷ୍ୟତରେ ଜଣେ ଉପଯୁକ୍ତ ନାଗରିକ ଭାବରେ ଦଣ୍ଡାୟମାନ ହୋଇ ପାରିବ ନାହିଁ । ତେଣୁ ଶରୀରର ଉପଯୁକ୍ତ ସ୍ୱାସ୍ଥ୍ୟ ଗଠନ ପାଇଁ ସମାଜର ଅର୍ଥନୈତିକ ଅବସ୍ଥାର ଉନ୍ନତି ଏକାନ୍ତ ବାଞ୍ଛନୀୟ ।

୫ । **ସ୍ୱାସ୍ଥ୍ୟ ସେବା ସଂଗଠନ**—ବିଭିନ୍ନ ସ୍ୱାସ୍ଥ୍ୟ ସେବା ସଂଗଠନ ମାଧ୍ୟମରେ ସାମାଜିକ ତଥା ବ୍ୟକ୍ତିବିଶେଷଙ୍କ ସ୍ୱାସ୍ଥ୍ୟର ଉନ୍ନତି ସାଧନ କରାଯାଇପାରେ । ପ୍ରତ୍ୟେକ ଗ୍ରାମାଞ୍ଚଳରେ ଯଦି ଉପଯୁକ୍ତ ପିଇବା ପାଣିର ବନ୍ଦୋବସ୍ତ କରାଯାଇପାରିବ । ତେବେ ଝାଡ଼ାବାନ୍ତି, ପତଳା ଝାଡ଼ା ଓ ଆନ୍ତ୍ରିକ ଜ୍ୱର ପ୍ରଭୃତି ରୋଗରୁ ପିଲାଙ୍କୁ ସହଜରେ ରକ୍ଷା କରାଯାଇ ପାରିବ । ପୁଷ୍ଟିକର ଖାଦ୍ୟ ଯୋଗାଇ ଦେଇ ପାରିଲେ ପିଲା ସୁସ୍ଥ ସବଳ ହେବା ସଙ୍ଗେ ସଙ୍ଗେ ପୁଷ୍ଟିହୀନ ଜନିତ ଅନ୍ଧାରକଣା, ରିକେଟ୍, ବେରିବେରି ଓ ରକ୍ତହୀନତା ପ୍ରଭୃତି ରୋଗରୁ ମୁକ୍ତ ପାଇ ପାରିବ । ପିଲାର ସ୍ୱାସ୍ଥ୍ୟ ଯଦି

ଭଲ ରହେ ତେବେ ସେ ଦୀର୍ଘାୟୁ ହୁଏ ଏବଂ ଜଣେ ସୁନାଗରିକ ଭାବରେ ନିଜକୁ ପ୍ରତିଷ୍ଠିତ କରିପାରେ ।

## ସ୍ୱାସ୍ଥ୍ୟ ଶିକ୍ଷା

ସ୍ୱାସ୍ଥ୍ୟ ଏକ ଅମୂଲ୍ୟ ସମ୍ପଦ । ସ୍ୱାସ୍ଥ୍ୟ ଭଲ ରହିଲେ ମଣିଷ ସମସ୍ତ କାର୍ଯ୍ୟ ସୁରୁଖୁରୁରେ ନିର୍ବାହ କରିପାରିବ । ଜୀବନର ଇଚ୍ଛା, ଅଭିପ୍ସା, ଆକାଂକ୍ଷା ପୂରଣ କରିପାରିବ । ଯେପରି ଘରଟି ମୂଳଦୁଆ ଉପରେ ନିର୍ଭର କରେ ସେପରି ମଣିଷର ସୁଖ, ଶାନ୍ତି ସବୁ ତାର ଉତ୍ତମ ସ୍ୱାସ୍ଥ୍ୟ ଉପରେ ନିର୍ଭର କରେ । ଶିକ୍ଷାର ବିସ୍ତାର ହେବା ପୂର୍ବରୁ ଲୋକମାନେ ସ୍ୱାସ୍ଥ୍ୟ ଉପରେ ଏତେ ଗୁରୁତ୍ୱ ଦେଉ ନ ଥିଲେ । 'ସ୍ୱାସ୍ଥ୍ୟ ହିଁ ସମ୍ପଦ' ଏହି ଉକ୍ତିଟିକୁ ଏବେ ମଧ୍ୟ ଆମ ଦେଶର ଅଧିକାଂଶ ଲୋକ ଗୁରୁତ୍ୱ ଦିଅନ୍ତି ନାହିଁ । ସ୍ୱାସ୍ଥ୍ୟ ରକ୍ଷାର ଯେଉଁ ନିୟମଗୁଡ଼ିକ ଅଛି ଅଧିକାଂଶ ଲୋକ ସେ ବିଷୟରେ ଅନଭିଜ୍ଞ । ସେଥିରେ ସେମାନଙ୍କ ଜ୍ଞାନ ଖୁବ୍ କମ୍ । ସେମାନଙ୍କର ଚିନ୍ତାଧାରା ମଧ୍ୟ ଅନୁକୂଳ ନୁହେଁ । ସ୍ୱାସ୍ଥ୍ୟ ବିଷୟରେ ସେମାନଙ୍କର ପୂର୍ବ ମତାମତ ସେମାନେ ବଦଳାଇବାକୁ ପ୍ରସ୍ତୁତ ନୁହନ୍ତି । ଫଳରେ ସେମାନଙ୍କର ପୂର୍ବରୁ ଅଭ୍ୟାସର ପରିବର୍ତ୍ତନ କିମ୍ବା ସଂଶୋଧନ ହୋଇପାରେ ନାହିଁ । ଉଦାହରଣସ୍ୱରୂପ—ପାଇଖାନା ଯୋଗାଇ ଦିଆଗଲେ ମଧ୍ୟ ଲୋକମାନେ ତାକୁ ବ୍ୟବହାର କରନ୍ତି ନାହିଁ । ଟିକା ଦେବାର ବ୍ୟବସ୍ଥା ଥିଲେ ମଧ୍ୟ ତାର ସୁଯୋଗ ନିଅନ୍ତି ନାହିଁ । ମଶାରି ଥିଲେ ସୁଦ୍ଧା ତାକୁ ବ୍ୟବହାର କରନ୍ତି ନାହିଁ ଇତ୍ୟାଦି । ଗ୍ରାମରେ ଗୋଟିଏ ଲୋକକୁ ଯଦି କୌଣସି ସଂକ୍ରାମକ ରୋଗ ହୁଏ ତେବେ ତାହା ଅନ୍ୟ ଲୋକଙ୍କୁ ହୋଇପାରେ ତାହା ଜାଣିଲେ ମଧ୍ୟ ଲୋକମାନେ ତାର ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରୁନାହାନ୍ତି । ତେଣୁ ଦେଖାଯାଏ ଯେ ସ୍ୱାସ୍ଥ୍ୟ ବିଷୟକ ଜ୍ଞାନ ଓ ସ୍ୱାସ୍ଥ୍ୟାଭ୍ୟାସ ଭିତରେ ଗୋଟିଏ ବ୍ୟବଧାନ ରହିଯାଉଛି । ତେଣୁ ଆମ୍ଭମାନଙ୍କୁ ଏହି ବ୍ୟବଧାନକୁ ଦୂର କରିବାକୁ ପଡ଼ିବ ।

### ସ୍ୱାସ୍ଥ୍ୟ ଶିକ୍ଷା କ'ଣ ?

ସ୍ୱାସ୍ଥ୍ୟ ଶିକ୍ଷା ଗୋଟିଏ ପ୍ରଣାଳୀ ଯାହାକି ଲୋକମାନଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ପ୍ରତିକୂଳ ଅଭ୍ୟାସକୁ ବଦଳାଇ ଅନୁକୂଳ ଅଭ୍ୟାସକୁ ଗ୍ରହଣ କରିବାକୁ ସାହାଯ୍ୟ କରେ ତଥା ତତ୍ ସମ୍ବନ୍ଧୀୟ ଜ୍ଞାନ ଓ ମତାମତ ବଦଳାଇବାକୁ ପ୍ରବର୍ତ୍ତାଇ ଥାଏ । ଏହା

ବ୍ୟକ୍ତିର ସ୍ୱାସ୍ଥ୍ୟାନୁକୂଳ ଅଭ୍ୟାସକୁ ପ୍ରବର୍ତ୍ତାଇବା ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟାନୁକୂଳ ଆଚରଣକୁ ଅନୁଶୀଳନ ପାଇଁ ସମର୍ଥ ହୁଏ । ପୃଥିବୀର ଅଧିକାଂଶ ଦେଶର ଲୋକମାନଙ୍କର ଖରାପ ସ୍ୱାସ୍ଥ୍ୟର କାରଣ ହେଉଛି ଅଜ୍ଞତା ଏବଂ ବଦଭ୍ୟାସ । ତେଣୁ ସ୍ୱାସ୍ଥ୍ୟ ଶିକ୍ଷା ହିଁ ଏକମାତ୍ର ପନ୍ଥା ଯାହାଦ୍ୱାରା ସ୍ୱାସ୍ଥ୍ୟ ବିଷୟକ ଜ୍ଞାନ ଏବଂ ଅଭ୍ୟାସ ମଧ୍ୟରେ ଥିବା ବ୍ୟବଧାନକୁ ଦୂର କରିପାରିବ । ଉଦାହରଣସ୍ୱରୂପ, କେତେକ ଲୋକ ମା' କ୍ଷୀର ଯେ ଜନ୍ମରୁ ଶିଶୁ ପାଇଁ ଉତ୍କୃଷ୍ଟ ଖାଦ୍ୟ ବୋଲି ଜାଣନ୍ତି ନାହିଁ । ସିଗାରେଟ୍ ସ୍ୱାସ୍ଥ୍ୟ ପ୍ରତି କ୍ଷତିକାରକ, ମିଳିମିଳା ଟିକା ନେଲେ ହେବନାହିଁ ଇତ୍ୟାଦି ଜାଣନ୍ତି ନାହିଁ । ତେଣୁ ସ୍ୱାସ୍ଥ୍ୟ ଶିକ୍ଷା ଦେଲେ ଲୋକେ ତାଙ୍କର ପୂର୍ବ ମତାମତକୁ ବଦଳାଇ, ସ୍ୱାସ୍ଥ୍ୟାନୁକୂଳ ଅଭ୍ୟାସ ଗ୍ରହଣ କରିବା ଓ ଉତ୍ତମ ସ୍ୱାସ୍ଥ୍ୟ ଲାଭ କରିବାକୁ ସମର୍ଥ ହୁଅନ୍ତି ।

କଥାରେ ଅଛି "Prevention is better than cure" ଅର୍ଥାତ୍ ରୋଗର ଚିକିତ୍ସା ଅପେକ୍ଷା ରୋଗ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିବା ବିଜ୍ଞତାର ପରିଚାୟକ । ରୋଗ ହେଲେ ଆରୋଗ୍ୟ ଲାଭ ପାଇଁ ବହୁତ ଖର୍ଚ୍ଚ କରିବାକୁ ପଡ଼େ କିନ୍ତୁ ପ୍ରତିଷେଧକ ଟିକା ନେଲେ ବା ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କଲେ ରୋଗର ସମ୍ଭାବନା ନ ଥାଏ । ଉଦାହରଣସ୍ୱରୂପ—ଗୋଟିଏ ଡି.ପି.ଟି. ଟିକାନେଲେ ଶିଶୁକୁ ତିନୋଟି ରୋଗରୁ (ଯଥା—କଣ୍ଠ ଅଳତ, ଲହରି କାଶ ଏବଂ ଧନୁଷ୍ଟଙ୍କାର) ରକ୍ଷା କରାଯାଇ ପାରିବ ଏବଂ ସ୍ୱାସ୍ଥ୍ୟକେନ୍ଦ୍ରରେ ଏହା ମାଗଣାରେ ମିଳେ, ଲୋକେ ଏହା ଜାଣନ୍ତି ନାହିଁ । ଟିକା ନ ଦେଲେ ଅଯଥା ବହୁ ଅର୍ଥ ବ୍ୟୟ କରିବାକୁ ପଡ଼େ ଏବଂ ବେଳେବେଳେ ଶିଶୁ ମଧ୍ୟ ମୃତ୍ୟୁମୁଖରେ ପଡ଼ିପାରେ ।

## ସ୍ୱାସ୍ଥ୍ୟ ଶିକ୍ଷାର ଲକ୍ଷ୍ୟ

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (W.H.O.) ସ୍ୱାସ୍ଥ୍ୟ ଶିକ୍ଷାର ତିନୋଟି ଲକ୍ଷ୍ୟ ନିର୍ଦ୍ଧାରଣ କରିଅଛନ୍ତି । ସେଗୁଡ଼ିକ ହେଲା—

(୧) ଗୋଷ୍ଠୀ ତଥା ବ୍ୟକ୍ତିପାଇଁ ସ୍ୱାସ୍ଥ୍ୟ ବହୁତ ମୂଲ୍ୟବାନ ସମ୍ପଦ, ଏହା ଯେପରି ସମସ୍ତେ ଅନୁଭବ କରିବେ ।

(୨) ଲୋକମାନଙ୍କୁ ଏଭଳି ଜ୍ଞାନ ଦେବାକୁ ପଡ଼ିବ ଯାହାଦ୍ୱାରା କି ସେମାନେ ସେମାନଙ୍କର କୌଶଳ ଓ ପୂର୍ବ ଅନୁସୃତ ମନୋବୃତ୍ତି ବଦଳାଇବେ ଏବଂ ସେମାନଙ୍କର ସ୍ୱାସ୍ଥ୍ୟ ସମସ୍ୟାଗୁଡ଼ିକ ନିଜେ ନିଜର କାର୍ଯ୍ୟ ଓ ଉଦ୍ୟମ ଦ୍ୱାରା ସମାଧାନ କରି ପାରିବେ ।

(ଗ) ଯେଉଁ ସବୁ ସ୍ୱାସ୍ଥ୍ୟ ସେବା ମିଳୁଛି ତାର ସଦୁପଯୋଗ କରିବେ ।

ସ୍ୱାସ୍ଥ୍ୟ ଶି ।ର ପ୍ରଥମ ଲକ୍ଷ୍ୟଟି ହେଉଛି ବୈଜ୍ଞାନିକ ଉପାୟରେ ଜ୍ଞାନ ଆହରଣ କରିବାପରେ ଲୋକମାନେ ସେମାନଙ୍କର ସ୍ୱାସ୍ଥ୍ୟାରକ୍ଷା ତଥା ସ୍ୱାସ୍ଥ୍ୟୋନ୍ନତି କରିବାକୁ ସକ୍ଷମ ହେବେ । ସ୍ୱାସ୍ଥ୍ୟ ଶିକ୍ଷା ଏଭଳି ହେବ ଯାହା ଲୋକମାନଙ୍କୁ ସ୍ୱାସ୍ଥ୍ୟ ବିଷୟରେ ଆବଶ୍ୟକତା ଏବଂ ସମସ୍ୟାଗୁଡ଼ିକ ବିଷୟରେ ସଚେତନ କରାଇବ । ଖାଲି ଲୋକ-ମାନଙ୍କୁ କହିଲେ ଯଥେଷ୍ଟ ହେବ ନାହିଁ । ସେମାନଙ୍କର ଅସ୍ୱାସ୍ଥ୍ୟକର ପରିବେଶକୁ ଓ ଅଭ୍ୟାସକୁ ଛାଡ଼ିବାକୁ ଚେଷ୍ଟା କରାଇବାକୁ ହେବ । ଲୋକମାନେ ଟିକା ନେବାକୁ ମନା କରିଦେଉଛନ୍ତି । ଗର୍ଭବତୀ ଓ ପ୍ରସୂତି ମହିଳାମାନେ ଡାକ୍ତରଖାନାକୁ ବା କ୍ଲିନିକ୍‌କୁ ଆସୁନାହାନ୍ତି । ପରିବାର ନିୟୋଜନ ପଦ୍ଧତିଗୁଡ଼ିକୁ ଗ୍ରହଣ କରୁନାହାନ୍ତି ଏବଂ ଏହା ଫଳରେ ବିଶେଷ ଭାବରେ ରୋଗ ଭୋଗି ମୃତ୍ୟୁ ମୁଖରେ ପଡ଼ୁଛନ୍ତି । ସ୍ୱାସ୍ଥ୍ୟଶିକ୍ଷା ଲୋକ ମାନଙ୍କର ଅଜ୍ଞତା, କୁ ପ୍ରଥା ଓ ଭୁଲ ଧାରଣାକୁ ଦୂରୀଭୂତ କରି ବ୍ୟକ୍ତି, ଦଳ ତଥା ଗୋଷ୍ଠୀକୁ ସେମାନଙ୍କ ମତାମତ ବଦଳାଇ ଉତ୍ତମ ଅଭ୍ୟାସ ଗ୍ରହଣ କରିବାକୁ ପ୍ରବର୍ତ୍ତାଇବ । ସ୍ୱାସ୍ଥ୍ୟଶି ।କୁ ଛାଡ଼ିଦେଲେ ସ୍ୱାସ୍ଥ୍ୟ ଯୋଜନା କାର୍ଯ୍ୟକ୍ରମଗୁଡ଼ିକ ସଫଳ ହୋଇ ପାରିବ ନାହିଁ । ଲୋକମାନେ ଯଦି ସ୍ୱାସ୍ଥ୍ୟଶିକ୍ଷା କାର୍ଯ୍ୟକ୍ରମରେ ସଂଶ୍ଳିଷ୍ଟ ନ ହେବେ, ସଜାଗ ନ ହେବେ, ଅନ୍ଧବିଶ୍ୱାସ ଦୂର ନ କରିବେ, ମତାମତ ନ ବଦଳା-ଇବେ ତେବେ ସ୍ୱାସ୍ଥ୍ୟରକ୍ଷା କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇ ପାରିବ ନାହିଁ । ତାହା ହେଲା ସ୍ୱାସ୍ଥ୍ୟ ଶିକ୍ଷାର ଦ୍ୱିତୀୟ ଲକ୍ଷ୍ୟ । ତୃତୀୟ ଲକ୍ଷ୍ୟ ହେଲା କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କଲା-ବେଳେ ଲୋକମାନଙ୍କର ସାହାଯ୍ୟ ଓ ସହଯୋଗ ନିତାନ୍ତ ଆବଶ୍ୟକ । ଯଦି ସ୍ୱାସ୍ଥ୍ୟ ବିଭାଗ ତରଫରୁ ବ୍ଲିଚିଙ୍ଗ ପାଉଡ଼ର ପକାଇବାକୁ ଗଲାବେଳେ ଲୋକେ ମନା କରନ୍ତି ବା ଘରେ ଡି.ଡ଼ି.ଟି ସ୍ପ୍ରେ କରିବାକୁ ଗଲାବେଳେ ସାହାଯ୍ୟ ସହଯୋଗ ନ କରନ୍ତି ତେବେ ସରକାର କ'ଣ କରିବେ ? ତେଣୁ ଲୋକମାନଙ୍କୁ ଏପରି ଶିକ୍ଷା ଦିଆଯିବ ଯେଉଁଥିରେ କି ସେମାନଙ୍କର ସ୍ୱାସ୍ଥ୍ୟ ସମସ୍ୟାଗୁଡ଼ିକ ` ସେମାନେ ନିଜେ ନିଜେ ଚିହ୍ନିକରି ସମାଧାନ କରିପାରିବେ ଓ ସ୍ୱାସ୍ଥ୍ୟ ସେବାରେ ସହଯୋଗ କରିବେ ।

## ସ୍ୱାସ୍ଥ୍ୟଶିକ୍ଷାର ବିଷୟବସ୍ତୁ

ପ୍ରତ୍ୟେକ ରୋଗପାଇଁ ଭିନ୍ନଭିନ୍ନ ସ୍ୱାସ୍ଥ୍ୟଶିକ୍ଷା ଦିଆଯାଏ । ଉଦାହରଣ ସ୍ୱରୂପ—ଜଣେ ହୃଦ୍ ରୋଗୀକୁ ଯେଉଁ ସ୍ୱାସ୍ଥ୍ୟଶିକ୍ଷା ଦିଆଯାଏ ଜଣେ ଯକ୍ଷ୍ମାରୋଗୀକୁ

ସେ ଶିକ୍ଷା ଦିଆଯାଇ ନ ଥାଏ । ସାଧାରଣତଃ ମଣିଷର ଶରୀରତତ୍ତ୍ୱ ପୁଷ୍ଟି ବିଜ୍ଞାନ ବ୍ୟକ୍ତିଗତ ତଥା ସାମୂହିକ ସ୍ୱାସ୍ଥ୍ୟରକ୍ଷା, ମା ଓ ଶିଶୁର ଯତ୍ନ, ସଂକ୍ରାମକ ରୋଗର ନିରାକରଣ, ମାନସିକ ସ୍ୱାସ୍ଥ୍ୟ, ଦୁର୍ଘଟଣାରୁ ରକ୍ଷା ପାଇବାର ବ୍ୟବସ୍ଥା, ସ୍ୱାସ୍ଥ୍ୟ ସେବାର ସଦୁପଯୋଗ ଇତ୍ୟାଦି ବିଷୟରେ ସ୍ୱାସ୍ଥ୍ୟ ଶିକ୍ଷା ଦିଆଯାଇଥାଏ । ତେଣୁ ସ୍ୱାସ୍ଥ୍ୟ ଶିକ୍ଷାଦାତା କେଉଁ ଲୋକ ପାଇଁ କି ପ୍ରକାର ସ୍ୱାସ୍ଥ୍ୟଶିକ୍ଷା ଦେବେ ତାହା ଠିକ୍ କରି ଥାଆନ୍ତି ।

## ସ୍ୱାସ୍ଥ୍ୟ ଶିକ୍ଷାର ପଦ୍ଧତି ଓ ନୀତିନିୟମ

ସ୍ୱାସ୍ଥ୍ୟ ଶିକ୍ଷା ଦେଲାବେଳେ କେତେଗୁଡ଼ିଏ ନୀତିନିୟମ ପ୍ରତି ଦୃଷ୍ଟିଦେବାକୁ ପଡ଼ିଥାଏ । ଭେଷଜ ବିଜ୍ଞାନର ଏକାଧିକ ନିୟମ ଓ ସାଧାରଣ ଶିକ୍ଷାର ବିବିଧ ଅଭ୍ୟାସକୁ ଭିତ୍ତିକରି ଏହି ପଦ୍ଧତିଗୁଡ଼ିକୁ ଲିପିବଦ୍ଧ କରାଯାଇଛି ।

ସ୍ୱାସ୍ଥ୍ୟ ଶିକ୍ଷା ଖାଲି ଜଣକୁ ଦେଲେ ହେବ ନାହିଁ । ସ୍ୱାସ୍ଥ୍ୟ ବିଷୟରେ ଶିକ୍ଷା ଦେବା ଓ ଶିକ୍ଷାଲାଭ କରିବା—ଏହି ଉଭୟ ଅଭ୍ୟାସ ଉପରେ ନିର୍ଭର କରେ । ପ୍ରତ୍ୟେକ ବ୍ୟକ୍ତି ଜୀବନବ୍ୟାପୀ କିଛି ନା କିଛି ଶିକ୍ଷାଲାଭ କରୁଥାଆନ୍ତି ଓ ଶିକ୍ଷାଲାଭ କଲାପରେ ପରିବେଶ ଅନୁସାରେ ନିଜ ଆଚରଣର ସଂଶୋଧନ କରନ୍ତି, ଶିଖିବା ଓ ଶିଖାଇବା ହେଉଛି ଗୋଟିଏ ପ୍ରଣାଳୀ । ଶିକ୍ଷା ଗ୍ରହଣ କରିବା ପାଇଁ ନିଜେ କୌଣସି ବିଷୟରେ ଶିକ୍ଷିତ ହେବାପାଇଁ ଜଣେ ଇଚ୍ଛୁକ ଓ ଆଗ୍ରହୀ ଥିବା ଆବଶ୍ୟକ । ତେଣୁ ମୂଳ କଥା ହେଲା ଶିକ୍ଷା ଲାଭ ପାଇଁ ବ୍ୟକ୍ତିର ଅଭିପ୍ରେରଣା ରହିବା ଦରକାର । ଯଦି ସେ ଜଣେ ମଣିଷ ଭାବରେ ଶିକ୍ଷାର ବିଶେଷତଃ ସ୍ୱାସ୍ଥ୍ୟ ଶିକ୍ଷା ଗ୍ରହଣ କରିବା ପାଇଁ ଅଭିପ୍ରେରିତ (motivated) ନ ହୁଏ, ତେବେ ସେ ଚିରଦିନ ଅଜ୍ଞାନ—ଅନ୍ଧକାରରେ ରହିବ ।

ଶିକ୍ଷା ଗ୍ରହଣ କରିବାର ଯଦି ଇଚ୍ଛା ନ ଥିବ ତେବେ ଶିକ୍ଷକ କ'ଣ ଶିକ୍ଷାଦାନ କରିପାରିବେ ? ପୁଣି ଯଦି ଶିକ୍ଷକ ଠିକ୍ ଭାବରେ ଶିକ୍ଷାଦାନ ନ ଦିଅନ୍ତି ତେବେ ଛାତ୍ରମାନଙ୍କ ଶିକ୍ଷାଗ୍ରହଣ ପୂର୍ଣ୍ଣାଙ୍ଗ ହେବ ନାହିଁ । ତେଣୁ ସ୍ୱାସ୍ଥ୍ୟ ଶିକ୍ଷା ଦେବାବେଳେ କେତେଗୁଡ଼ିଏ ନୀତି, ନିୟମ ଓ ପଦ୍ଧତି ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ସେହି ପଦ୍ଧତି ଓ ନୀତି ନିୟମଗୁଡ଼ିକୁ ଆମ୍ଭେମାନେ ଆଲୋଚନା କରିବା ।

## ୧ । ଲୋକଙ୍କ ମନରେ ଆଗ୍ରହ ସୃଷ୍ଟି କରିବା

ଏକଥା ସତ ଯେ ଲୋକଙ୍କର କୌଣସି ବିଷୟରେ ଯଦି ଆଗ୍ରହ ନ ଥାଏ, ତେବେ ସେମାନେ ତାହା ଶୁଣିବେ ନାହିଁ । ଆମକୁ ଲୋକମାନଙ୍କର ଅନୁଭୂତ ପ୍ରତି ଦୃଷ୍ଟି ରଖି ସେମାନଙ୍କର ଆବଶ୍ୟକତା ପୂରଣ କରିବାକୁ ପଡ଼ିବ ଓ ଆଗ୍ରହ ସୃଷ୍ଟି କରାଇବାକୁ ପଡ଼ିବ ।

## ୨ । ଲୋକଙ୍କୁ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ସଂପୃକ୍ତ କରିବା

ଲୋକମାନେ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ସମ୍ପୃକ୍ତ ନ ହେଲେ କାର୍ଯ୍ୟକ୍ରମଟି ସଫଳ ହୋଇପାରିବ ନାହିଁ । ଦଳଗତ ଆଲୋଚନା, କର୍ମଶାଳା (workshop), କ୍ଷେତ୍ର ଭ୍ରମଣ ଇତ୍ୟାଦି କରାଇ ଲୋକମାନଙ୍କୁ ସଂଶ୍ଳିଷ୍ଟ କରିବାକୁ ପଡ଼ିବ । ବ୍ୟକ୍ତି ଜଣେ ସଂଶ୍ଳିଷ୍ଟ ହେଲେ ତା'ର ପରିବାର ଓ ସନ୍ତାନ ସନ୍ତତି ତଥା ପଡ଼ୋଶୀ ସଂଶ୍ଳିଷ୍ଟ ହେବେ । ସେମାନେ ଜଣେ ଏହି ଆବଶ୍ୟକତାର ଉପାଦେୟତା ଉପଲବ୍ଧି କରିପାରିବେ ।

## ୩ । ଜଣାରୁ ଅଜଣା

ସ୍ୱାସ୍ଥ୍ୟ ଶିକ୍ଷା ଦେଲାବେଳେ ଲୋକମାନଙ୍କୁ ଜଣାରୁ ଅଜଣାକୁ ନେବାକୁ ହେବ । ଜାଣିଥିବା ବିଷୟବସ୍ତୁକୁ କେନ୍ଦ୍ରକରି ଯେଉଁ ବିଷୟ ସେମାନେ ଜାଣି ନ ଥିବେ ସେ ବିଷୟରେ ଧାରଣା ଦେବାକୁ ହେବ । ସେମାନେ ସ୍ୱାସ୍ଥ୍ୟ ବିଷୟର ଯେଉଁ ସ୍ତରରେ ଅଛନ୍ତି ଏବଂ ଯେତିକି ଜାଣିଛନ୍ତି ସେହି ସ୍ତରରୁ ନୂତନ ଜ୍ଞାନ ଦେବାକୁ ହେବ । ଉଦାହରଣସ୍ୱରୂପ, ମଳକୁ ଲୋକେ ଘୃଣା କରନ୍ତି । ମଳରୁ କି କି ରୋଗ ହୁଏ ସେମାନେ ଜାଣନ୍ତି ନାହିଁ । ଖାଲି ପାଦରେ ଝାଡ଼ାଗଲେ ଆଙ୍କୁଶ କୃମି (Hook worm) ଆମ ଶରୀରକୁ ପ୍ରବେଶ କରି ଆମକୁ ରୋଗାକ୍ରାନ୍ତ କରିପାରନ୍ତି । ଏହି ନୂତନ ଜ୍ଞାନ ଆମେ ତାଙ୍କୁ ଦେଲେ ସେମାନେ ଚପଲ ବ୍ୟବହାରର ଉପାଦେୟତା ଉପଲବ୍ଧି କରିପାରିବେ ।

ସେହିପରି ଖାଦ୍ୟରେ ମାଛି ବସିଲେ ଲୋକେ ତାକୁ ଘୃଣା କରନ୍ତି । କିନ୍ତୁ ମାଛି ବସିଲେ କି କି ରୋଗହୁଏ ସେ ବିଷୟରେ ସେମାନେ ଅଜ୍ଞ । ତେଣୁ ଲୋକମାନଙ୍କୁ

ଏତଦ୍‌ଜନିତ ରୋଗ ସମ୍ବନ୍ଧରେ ଜ୍ଞାନ ଦେବାକୁ ହେବ । ତାହା ଫଳରେ ଲୋକମାନେ ଖାଦ୍ୟ ପଦାର୍ଥକୁ ଘୋଡ଼ାଇ ରଖିବାର ଆବଶ୍ୟକତା ଅଧିକ ପରିମାଣରେ ଉପଲବ୍ଧି କରିପାରିବେ ।

## ୪ । ବିସ୍ତୃତ ଧାରଣା

ଏ କ୍ଷେତ୍ରରେ ଲୋକମାନଙ୍କର ବୁଝିବାର ସ୍ତର ଜାଣିବାକୁ ହେବ । ଯେଉଁ ଲୋକମାନଙ୍କୁ ଶିକ୍ଷା ଦିଆଯିବ ସେମାନଙ୍କର ଶିକ୍ଷାର ସ୍ତର କେତେ କଳନା କରି ସେହି ସ୍ତରକୁ ଖସି ଆସି ବୁଝାଇବାକୁ ହେବ । ଏହି ବୁଝାଇବା ସରଳ ଅଥଚ ବିସ୍ତୃତ ହେବା ଦରକାର । ଉଦାହରଣସ୍ୱରୂପ, ଗୋଟିଏ ମଧୁମେହ ରୋଗୀକୁ ଶ୍ୱେତସାର ଖାଦ୍ୟ କହିଲେ ସେ କିଛି ବୁଝିବ ନାହିଁ । ତାହାକୁ ଭାତ, ଆଳୁ ଇତ୍ୟାଦି ଖାଇବ ନାହିଁ ଏବଂ କ'ଣ ଖାଇବ, କେତେ ପରିମାଣରେ ଖାଇବ ଓ କ'ଣ ସବୁ ମୋଟେ ଖାଇବ ନାହିଁ ପରିଷ୍କାର ଭାବରେ କହିବାକୁ ହେବ ।

## ୫ । ବାରମ୍ବାର ବୁଝାଇବା

କେତେକ ଲୋକ ଥରେ କହିଲେ ବୁଝିପାରନ୍ତି । ଆଉ କେତେକ ମଧ୍ୟ ବୁଝିପାରନ୍ତି ନାହିଁ । କେତେକ ଲୋକ ଥରେ ଶୁଣି ମନେରଖନ୍ତି । ଆଉ କେତେକ ବୁଝିଥିଲେ ମଧ୍ୟ ଭୁଲି ଯାଆନ୍ତି । ତେଣୁ ଆମକୁ କିଛି ସମୟ ବ୍ୟବଧାନରେ ଗୋଟିଏ ବିଷୟକୁ ବିଭିନ୍ନ ମାଧ୍ୟମରେ ବାରମ୍ବାର କହିବାକୁ ପଡ଼ିବ । ଏହା କରିପାରିଲେ ଲୋକେ ଯଦିବା ଭୁଲି ଯାଇଥାଆନ୍ତି ଆଉ ଥରେ ଶୁଣି ପୁଣି ମନେପକାଇ କାର୍ଯ୍ୟରେ ଲଗାଇବେ ।

## ୬ । ନିଜେ କରି ଜାଣିବା

ଶିକ୍ଷା ଗୋଟିଏ ସର୍ବିସ୍ୱ ଧାରା । ଚୀନ ଭାଷାରେ କୁହାଯାଇଛି, "ଯାହା ମୁଁ ଶୁଣେ ଭୁଲିଯାଏ । ଯାହା ଦେଖେ ମୁଁ ମନେରଖେ । କିନ୍ତୁ ମୁଁ ଯଦି ଗୋଟିଏ କାର୍ଯ୍ୟ ନିଜେ ନିଜେ କରେ ତେବେ ତାହା ମୁଁ ଜାଣିପାରେ ।" ତେଣୁ ଲୋକେ କିପରି ନିଜେ କରି ଶିଖିବେ ତାହା ଦୃଷ୍ଟାନ୍ତ ସହ ବୁଝାଇବାକୁ ପଡ଼ିବ । ଦୃଷ୍ଟାନ୍ତ ଦେଇ ନିଜେ କରି ଦେଖାଇଦେଲେ ସେମାନେ ନିଜେ କରିବେ ଓ ଜାଣିବେ ।

## ୭ । ଯୋଗାଯୋଗ

ଯୋଗାଯୋଗ ବା ଭାବ ବିନିମୟ ପାଇଁ ବିଭିନ୍ନ ଉପାୟ ଅଛି । ପରିସ୍ଥିତି ଅନୁସାରେ ମାଧ୍ୟମର ଉପାଦେୟତା ଫଳପ୍ରଦ ହୋଇଥାଏ । ଛବି, ଗୀତ, ପୋଷ୍ଟର, ବକ୍ତୃତା, ଭିଡ଼ିଓ, ନାଟକ, ଖେଳ ଇତ୍ୟାଦି ଏହିଭଳି ମାଧ୍ୟମର କେତୋଟି ଦୃଷ୍ଟାନ୍ତ । କେଉଁ ମାଧ୍ୟମରେ ଆମେ ଶିକ୍ଷାଦେଲେ ଲୋକେ ଶୀଘ୍ର ଓ ସହଜରେ ଏହାକୁ ଗ୍ରହଣ କରିପାରିବେ ତାହା ଦେଖିବାକୁ ପଡ଼ିବ । ଏହା କଲେ ବିଷୟଗୁଡ଼ିକ ଅଧିକ ବୋଧଗମ୍ୟ ହେବ ।

## ୮ । ସଂସ୍କୃତି

ଲୋକଙ୍କର ସଂସ୍କୃତି ଚଳଣି ତଥା ଐତିହ୍ୟ ବିଷୟରେ ଜାଣି ସେମାନଙ୍କ ସଂସ୍କୃତି ନ ବଦଳାଇ ବରଂ ତାକୁ ଭିତ୍ତିକରି କାର୍ଯ୍ୟକଲେ ସ୍ୱାସ୍ଥ୍ୟ-ଶିକ୍ଷା ଯୋଜନା ସଫଳ ହୋଇପାରିବ । ଲୋକମାନେ ହେଉଛନ୍ତି ମୃତ୍ତିକା, ସ୍ୱାସ୍ଥ୍ୟ ବିଷୟର ଜ୍ଞାନ ହେଉଛି ମଞ୍ଜି, ଯୋଗାଯୋଗର ମାଧ୍ୟମ ହେଉଛି ଜଳ । ଜଳ ସିଞ୍ଚନ ଯେପରି ଠିକ୍ ଭାବରେ ନ ହେଲେ ମଞ୍ଜି ଗଛ ହୋଇ ପାରିବ ନାହିଁ ସେହିପରି ସ୍ଥାନୀୟ ସଂସ୍କୃତିକୁ ବିଚାରକୁ ନନେଇ ଯୋଗାଯୋଗ ମାଧ୍ୟମର ଠିକଣା ବ୍ୟବହାର ନ କଲେ ଲୋକମାନେ ବୁଝିପାରିବେ ନାହିଁ ଓ ଆଚରଣକୁ ପରିମାର୍ଜିତ ଓ ପରିବର୍ତ୍ତିତ କରିପାରିବେ ନାହିଁ ।

## ୯ । ଉତ୍ତମ ଜନ ସମ୍ପର୍କ

ସ୍ୱାସ୍ଥ୍ୟକର୍ମୀ ଯଦି ଲୋକମାନଙ୍କ ସହ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି କରନ୍ତି ଓ ଉତ୍ତମ ବ୍ୟବହାର ପ୍ରଦର୍ଶନ କରନ୍ତି ତେବେ ଲୋକମାନେ ଶୀଘ୍ର ନୂତନ ଜ୍ଞାନ ଆହରଣ କରିପାରିବେ । ଆମେ ଯଦି ଲୋକମାନଙ୍କ ପ୍ରତି ସହାନୁଭୂତିଶୀଳ ହେବା ଓ ସେମାନଙ୍କର ସୁଖ ଦୁଃଖରେ ସାଥୀହେବା ତେବେ ସେମାନେ ଆମକୁ ପ୍ରକୃତ ବନ୍ଧୁ ବୋଲି ଭାବିବେ ଏବଂ ନୂତନ ଜ୍ଞାନ ଆହରଣ କରିବେ ।

## ୧୦ । ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହ ସମ୍ପର୍କ

ବିଭିନ୍ନ ପ୍ରକାରର ନେତା ଅଛନ୍ତି । ସେମାନଙ୍କୁ ଲୋକେ ସମ୍ମାନ ଦେଖାନ୍ତି ଏବଂ ତାଙ୍କ କଥା ଅନୁସାରେ କାର୍ଯ୍ୟ କରନ୍ତି । ସ୍ୱାସ୍ଥ୍ୟ ଶିକ୍ଷାଦାତା ନେତାମାନଙ୍କୁ

ଉତ୍ତମ ବ୍ୟବହାର ଦେଖାଇ ସୁସମ୍ପର୍କ ରକ୍ଷା କଲେ ଗୋଷ୍ଠୀରେ କାର୍ଯ୍ୟକରିବା ସହଜ ହେବ । ତେଣୁ ଗ୍ରାମର ସ୍କୁଲ ଶିକ୍ଷକ, ଗ୍ରାମର ମୁଖିଆ, ରାଜନୈତିକ ତଥା ସାମାଜିକ ନେତା, ସାଧୁ ଦଳପତି ଇତ୍ୟାଦିଙ୍କୁ ପ୍ରଥମେ କାର୍ଯ୍ୟକ୍ରମ ବିଷୟରେ ବୁଝାଇ ସେମାନଙ୍କୁ ନୂତନ ସ୍ୱାସ୍ଥ୍ୟ ଶିକ୍ଷା ବିଷୟରେ ଜ୍ଞାନଦେଇ ସେମାନଙ୍କ ଆଚରଣରେ ପରିବର୍ତ୍ତନ ଆଣିବାକୁ ହେବ । ନେତାମାନଙ୍କର ପ୍ରଥମେ ହୃଦ୍‌ବୋଧ ହେଲେ କାର୍ଯ୍ୟକର୍ମ କାର୍ଯ୍ୟକାରୀ କରିବା ସହଜ ହୁଏ । ତେଣୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଆରମ୍ଭରୁ ଯୋଜନାରେ ସମ୍ପୃକ୍ତ କରିବାକୁ ହେବ ।

## ପୁଷ୍ଟିର ପ୍ରୟୋଜନୀୟତା

( Importance of Nutrition )

ଜୀବନଧାରଣ ପାଇଁ ଖାଦ୍ୟ ଏକାନ୍ତ ପ୍ରୟୋଜନ । ଖାଦ୍ୟ ଶରୀରର ଅଭିବୃଦ୍ଧି ତଥା କ୍ଷୟପୂରଣ ପାଇଁ ଆବଶ୍ୟକୀୟ ଉପାଦାନ ଯୋଗାଇଥାଏ । ସୁସ୍ଥତା ଓ ପୁଷ୍ଟି-ସାଧନ ପାଇଁ ଉପଯୁକ୍ତ ଖାଦ୍ୟ ଆବଶ୍ୟକ । ପୁଣି ଅପର ପକ୍ଷରେ ଏହାର ଅଭାବ ହେତୁ ଶରୀର ଅସୁସ୍ଥ ହୋଇଯାଏ । ଦୌଡ଼ିବା, ଖେଳିବା ଇତ୍ୟାଦି କାର୍ଯ୍ୟଦ୍ୱାରା ଶରୀର ମଧ୍ୟରେ ବିପାକ କ୍ରିୟା ଘଟେ । ପୁଣି ନୂତନ ତନ୍ତୁ ଗଠନ ପାଇଁ ଶକ୍ତି ବା ଉତ୍ତାପ ଆବଶ୍ୟକ । ଖାଦ୍ୟ ଏହି ଶକ୍ତି ବା ଉତ୍ତାପ ଯୋଗାଇଥାଏ ।

### ପୁଷ୍ଟିର ଉପାଦାନ

ସମସ୍ତ ପ୍ରକାର ଖାଦ୍ୟରେ ଛଅଟି ଉପାଦାନ ରହିଛି । ଯଥା—ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଖାଦ୍ୟପ୍ରାଣ, ଧାତୁସାର ଓ ଜଳ ।

ଉକ୍ତ ଉପାଦାନଗୁଡ଼ିକ ପ୍ରତ୍ୟେକ ଖାଦ୍ୟରେ ବିଭିନ୍ନ ପରିମାଣରେ ଥାଏ । ଯେଉଁ ଖାଦ୍ୟରେ ଯେଉଁ ଉପାଦାନଟି ଅଧିକ ପରିମାଣରେ ଥାଏ ତାହାକୁ ସେହିଭଳି ନାମିତ କରାଯାଇଥାଏ । ଯେପରି ଭାତ ଓ ଆଳୁରେ ଅଧିକ ଶ୍ୱେତସାର ଉପାଦାନ ଥିବା ହେତୁ, ଏଗୁଡ଼ିକ ଶ୍ୱେତସାର ଜାତୀୟ ଖାଦ୍ୟ । ମାଛ ଓ ମାଂସରେ ଅଧିକ ପରିମାଣରେ ପୁଷ୍ଟିସାର ଥିବା ହେତୁ ଏହା ପୁଷ୍ଟିସାର ଜାତୀୟ ଖାଦ୍ୟର ଅନ୍ତର୍ଭୁକ୍ତ ।

ଶରୀରର ସୁସ୍ଥତା ପାଇଁ ନିର୍ଦ୍ଦିଷ୍ଟ ଅନୁପାତ ଓ ପରିମାଣ ଅନୁଯାୟୀ ଏହି ସମସ୍ତ ପ୍ରକାର ଖାଦ୍ୟ ଆବଶ୍ୟକ । କୌଣସି ଏକ ଉପାଦାନର ସ୍ୱଳ୍ପତା ବା ଆଧିକ୍ୟ ନାନା ପ୍ରକାର ରୋଗର ଉତ୍ପତ୍ତିର କାରଣ ହୁଏ ଏବଂ ପ୍ରାକୃତିକ ବା କୃତ୍ରିମ ଉପାୟରେ ଏଗୁଡ଼ିକର ସମତା ରକ୍ଷା ଦ୍ୱାରା ହିଁ ରୋଗର ନିରାକରଣ ସମ୍ଭବ । ନିମ୍ନରେ ଉପରୋକ୍ତ ଖାଦ୍ୟ-ଉପାଦାନଗୁଡ଼ିକ ସମ୍ବନ୍ଧରେ ବିସ୍ତାରିତ ଭାବେ ଆଲୋଚନା କରାଗଲା ।

## ଶ୍ୱେତସାର ଜାତୀୟ ଖାଦ୍ୟ (Carbohydrates)

ଏହାର ଅନ୍ୟନାମ ଶର୍କରା ଜାତୀୟ ଖାଦ୍ୟ । ଏହା ସହଜ ଲଭ୍ୟ ଓ ପ୍ରଚୁର ପରିମାଣରେ ମିଳିଥାଏ । ଆମେ ଗ୍ରହଣ କରୁଥିବା ଖାଦ୍ୟ ମଧ୍ୟରେ ଏହି ଶ୍ରେଣୀର ଖାଦ୍ୟର ପରିମାଣ ଅଧିକ । ଏହା ଶରୀର ମଧ୍ୟରେ ହଜମ ହୋଇ ଦ୍ରାକ୍ଷା ଶର୍କରା (Glucose)ରେ ପରିଣତ ହୁଏ ଓ ରକ୍ତରେ ମିଶେ । ଏହି ଦ୍ରାକ୍ଷା ଶର୍କରାର କିଛି ଅଂଶ ଯକୃତ ଓ ମାଂସପେଶୀ ମଧ୍ୟରେ ସଞ୍ଚିତ ହୋଇ ରହେ । ଏହି ସଞ୍ଚିତ ଦ୍ରାକ୍ଷା-ଶର୍କରାକୁ ଗ୍ଲାଇକୋଜେନ୍ (Glycogen) କହନ୍ତି । ଆବଶ୍ୟକତା ପଡ଼ିଲେ ଏହି ଗ୍ଲାଇକୋଜେନ୍ ପୁଣି ଦ୍ରାକ୍ଷାଶର୍କରାରେ ପରିଣତ ହୋଇ ରକ୍ତରେ ମିଶେ ।

ଶ୍ୱେତସାର ଜାତୀୟ ଖାଦ୍ୟ ପ୍ରଧାନତଃ ଶରୀରକୁ ଶକ୍ତି ଯୋଗାଇଥାଏ । ଯାହା ଫଳରେ ଶରୀର କାର୍ଯ୍ୟ କରିବା ପାଇଁ ସକ୍ଷମ ହୋଇପାରେ ଏବଂ ଶରୀର ମଧ୍ୟରେ ବିପାଚନ କିମ୍ବା ସଂଘଟିତ ହୋଇଥାଏ । ଆବଶ୍ୟକତାରୁ ଅଧିକ ଶ୍ୱେତସାର ଖାଦ୍ୟ ଶରୀରରେ ମେଦ ବା ଚର୍ବି Fat) ବୃଦ୍ଧି କରିଥାଏ । ପୁଣି ଅପର ପକ୍ଷରେ ଏହାର ପରିମାଣ ଆବଶ୍ୟକତାରୁ କମ୍ ହେଲେ ଶରୀର ଦୁର୍ବଳ ହୋଇଯାଏ ଓ କାର୍ଯ୍ୟ କରିବା ଶକ୍ତି ହରାଏ ।

## ସ୍ନେହସାର ଜାତୀୟ ଖାଦ୍ୟ (Fat)

ଏହାକୁ ଚର୍ବି ଜାତୀୟ ଖାଦ୍ୟ କୁହାଯାଏ । ସମ ପରିମାଣ ଶ୍ୱେତସାର ଓ ପୁଷ୍ଟିସାର ତୁଳନାରେ ଏହା ଶରୀରକୁ ଦୁଇଗୁଣ ଶକ୍ତି ଯୋଗାଇଥାଏ । ସେଥିପାଇଁ ଏହାକୁ 'ଘନୀଭୂତ ଶକ୍ତି ପ୍ରଦାୟିନୀ' ଖାଦ୍ୟ କହନ୍ତି । ଏହାର ଅଭାବରେ ଶରୀର ଶୁଷ୍କ ଓ ଶକ୍ତିହୀନ ହୋଇଯାଏ । ଏହା ଖାଦ୍ୟ ପଦାର୍ଥକୁ ସ୍ୱାଦଯୁକ୍ତ କରିଥାଏ । ଶରୀର

ମଧ୍ୟରେ ହଜମ ହୋଇ ଏହା ଗ୍ଲିସେରଲ୍ (Glycerol) ଓ ସ୍ନେହାମ୍ଳ (Lactic Acid)ରେ ପରିଣତ ହୁଏ ଓ ଚର୍ବି ଆକାରରେ ଶରୀରରେ ଜମା ହୋଇ ରହେ ।

ସ୍ନେହସାର ଜାତୀୟ ଖାଦ୍ୟ ଦୁଇ ପ୍ରକାର, ଯଥା—(୧) ପ୍ରାଣୀଜ, (୨) ଉଦ୍ଭିଜ୍ଜ ।

(୧) ପ୍ରାଣୀଜ ସ୍ନେହସାର—ଅଣ୍ଡାକେଶର, ମାଂସ, ମାଛ ତେଲ, ଘିଅ, ଲହୁଣୀ ଇତ୍ୟାଦି ଏହି ଶ୍ରେଣୀଭୁକ୍ତ ।

(୨) ଉଦ୍ଭିଜ୍ଜ ସ୍ନେହସାର—ନଡ଼ିଆ, ସୋରିଷ, ରାଶି, ଚିନାବାଦାମ ପ୍ରଭୃତି ଏହି ଶ୍ରେଣୀ ଅନ୍ତର୍ଗତ ।

ସ୍ନେହସାର ଜାତୀୟ ଖାଦ୍ୟର ପ୍ରଧାନ କାର୍ଯ୍ୟ ହେଲା ଶରୀରକୁ ଶକ୍ତି ଯୋଗାଇବା ।

## ପୁଷ୍ଟିସାର ଜାତୀୟ ଖାଦ୍ୟ (Protein)

ଶରୀର ଅଭିବୃଦ୍ଧି ପାଇଁ ଏହି ଜାତୀୟ ଖାଦ୍ୟର ଏକାନ୍ତ ଆବଶ୍ୟକୀୟତା ରହିଛି । ତେଣୁ ଏହାକୁ ଶରୀର ଗଠନକାରୀ ଖାଦ୍ୟ କୁହାଯାଏ । ଶରୀରରେ ହଜମ ହୋଇ ପୁଷ୍ଟିସାର ଖାଦ୍ୟ ଏମିନୋ ଏସିଡ୍ (Amino Acid)ରେ ପରିଣତ ହୁଏ । ମୋଟ ୩୬ ପ୍ରକାର ଏମିନୋ ଏସିଡ୍ ମଧ୍ୟରୁ ୧୦ ପ୍ରକାର ଏମିନୋ ଏସିଡ୍ ଶରୀର ପାଇଁ ଏକାନ୍ତ ପ୍ରୟୋଜନ । ଏଗୁଡ଼ିକୁ ଅପରିହାର୍ଯ୍ୟ ଏମିନୋ ଏସିଡ୍ କହନ୍ତି ।

ସ୍ନେହସାର ଜାତୀୟ ଖାଦ୍ୟ ଭଳି ପୁଷ୍ଟିସାର ଜାତୀୟ ଖାଦ୍ୟ ମଧ୍ୟ ଦୁଇପ୍ରକାର, ଯଥା—(୧) ପ୍ରାଣୀଜ, (୨) ଉଦ୍ଭିଜ୍ଜ ।

(୧) ପ୍ରାଣୀଜ ପୁଷ୍ଟିସାର—ପ୍ରାଣୀମାନଙ୍କଠାରୁ ମିଳୁଥିବା ପୁଷ୍ଟିସାରକୁ ପ୍ରାଣୀଜ ପୁଷ୍ଟିସାର କୁହାଯାଏ । ଅଣ୍ଡା, ଦୁଧ, ଛେନା, ଦହି, ମାଛ ଓ ମାଂସ ଏହି ଶ୍ରେଣୀଭୁକ୍ତ ।

(୨) ଉଦ୍ଭିଜ୍ଜ ପୁଷ୍ଟିସାର—ସେହିପରି ଉଦ୍ଭିଦରୁ ମିଳୁଥିବା ପୁଷ୍ଟିସାରକୁ ଉଦ୍ଭିଜ୍ଜ ପୁଷ୍ଟିସାର କୁହାଯାଏ । ବିଭିନ୍ନ ଡାଲିଜାତୀୟ ଶସ୍ୟ, ସୋୟାବିନ୍, ଶିମ୍ବମଞ୍ଜି, କାଜୁବାଦାମ ଓ ଚିନାବାଦାମ ଏହି ଶ୍ରେଣୀ ଅନ୍ତର୍ଗତ ।

ଉକ୍ତ ଦୁଇ ଶ୍ରେଣୀର ପୁଷ୍ଟିସାର ମଧ୍ୟରେ ପ୍ରାଣୀଜ ପୁଷ୍ଟିସାର ଉତ୍କୃଷ୍ଟତର । କାରଣ ଏଥିରୁ ସମସ୍ତ ପ୍ରକାର ଅପରିହାର୍ଯ୍ୟ ଏମିନୋ ଏସିଡ୍ (Essential Amino Acid) ମିଳିଥାଏ ।

ତନ୍ତୁ ବା ଜୀବସାର ଗଠନ ପୁଷ୍ଟିସାର ଜାତୀୟ ଖାଦ୍ୟର ପ୍ରଧାନ କାର୍ଯ୍ୟ । ସେଥିପାଇଁ ଶରୀର ଅଭିବୃଦ୍ଧି ପାଇଁ ଏହା ଏକାନ୍ତ ପ୍ରୟୋଜନ । ଏହା ବ୍ୟତୀତ ପ୍ରତିଦିନ କ୍ଷୟ ହେଉଥିବା ତନ୍ତୁଗୁଡ଼ିକର ପୁନର୍ଗଠନ ଏହି ଜାତୀୟ ଖାଦ୍ୟର ଅନ୍ୟତମ କାର୍ଯ୍ୟ । ଶରୀର ମଧ୍ୟରେ ଶ୍ୱେତ ଓ ଲୋହିତ ରକ୍ତକଣିକା ଗଠନ ମଧ୍ୟ ଏହି ଜାତୀୟ ଖାଦ୍ୟ ଦ୍ୱାରା ସମ୍ପାଦିତ ହୋଇଥାଏ । ଶରୀରର ରୋଗ ପ୍ରତିରୋଧ ଶକ୍ତି ବୃଦ୍ଧି କରି ଶରୀରକୁ ନିରୋଗ ରଖିବା ଦିଗରେ ଏହା ସାହାଯ୍ୟ କରେ ।

## ଖାଦ୍ୟପ୍ରାଣ Vitamins)

ଭିଟାମିନ୍ ଶବ୍ଦଟି ଗ୍ରୀକ୍ ଭାଷାର ଭାଇଟା (Vita) ଶବ୍ଦରୁ ଆସିଅଛି । ଭାଇଟା ଶବ୍ଦର ଅର୍ଥ ଜୀବନ । ଶରୀରକୁ ସୁସ୍ଥ ରଖିବା ନିମନ୍ତେ ଏହି ଜାତୀୟ ଖାଦ୍ୟ ଏକାନ୍ତ ଆବଶ୍ୟକ । ତେଣୁ ଏହାକୁ ଭିଟାମିନ୍ ବା ଖାଦ୍ୟପ୍ରାଣ ବା ଜୀବନିକା କୁହାଯାଏ । ପଞ୍ଚଦଶ ଶତାବ୍ଦୀରେ କ୍ୟାପ୍‌ଟେନ୍ କୁକ୍‌ଙ୍କ ଦଳର ଅଭିଯାତ୍ରୀମାନଙ୍କର ଶୁଖିଲା ଫଳ ଖାଇବା ହେତୁ ଏକ ପ୍ରକାର ମାଢ଼ି ରୋଗ ହେଲା । କଞ୍ଚାଫଳ ଖାଇବା ଫଳରେ ଏହା ଦୂର ହେଲା । ଫଳତଃ ଗବେଷକମାନେ 'ଖାଦ୍ୟପ୍ରାଣ' ବା ଭିଟାମିନ୍ ଆବିଷ୍କାର କଲେ ଏବଂ ଶରୀର ପାଇଁ ଏହାର ଉପାଦେୟତା ସ୍ୱୀକାର କଲେ । ଭିଟାମିନ୍‌ର ବୈଚିତ୍ର୍ୟ ଏହି ଯେ ଏହା ଶରୀର ମଧ୍ୟରେ ତିଆରି ହୋଇପାରେ ନାହିଁ । ବିଭିନ୍ନ ପ୍ରକାର 'ଖାଦ୍ୟପ୍ରାଣ' ବିଶିଷ୍ଟ ଖାଦ୍ୟ ଖାଇବା ଦରକାର । ଶରୀର ଚର୍ମ ଓ ଶ୍ଲୈଷ୍ମିକ ଝିଲ୍ଲୀକୁ ସୁସ୍ଥ ରଖିବା ଓ ଜୀବକୋଷର ବିପାକ କ୍ରିୟା ପାଇଁ ଖାଦ୍ୟପ୍ରାଣ ଏକାନ୍ତ ପ୍ରୟୋଜନ । ଏହାର ଅଭାବରେ ବିଭିନ୍ନ ରୋଗ ହୁଏ । ସେଥିପାଇଁ ଏହାକୁ 'ସ୍ୱାସ୍ଥ୍ୟନିୟନ୍ତ୍ରଣକାରୀ' ଖାଦ୍ୟ କୁହାଯାଏ । ଭିଟାମିନ୍ ବିଭିନ୍ନ ପ୍ରକାର, ଯଥା—ଭିଟାମିନ୍ 'କ' (Vitamin-A), ଭିଟାମିନ୍ 'ଖ' ସମୂହ (Vitamin-B Complex), ଭିଟାମିନ୍ 'ଗ' (Vitamin C), ଭିଟାମିନ୍ 'ଘ' (Vitamin D), ଭିଟାମିନ୍ 'ଙ' (Vitamin E), ଓ ଭିଟାମିନ୍ 'ଚ' (Vitamin K) । ଏହି ଭିଟାମିନ୍‌ଗୁଡ଼ିକ କ୍ଷୁଦ୍ରାନ୍ତ୍ରରେ ଶୋଷିତ ହୁଏ ।

## ଭିଟାମିନ୍ 'କ' (Vitamin A)

ଏହି ଭିଟାମିନ୍ ଦୁଇ ପ୍ରକାର, ଯଥା—(୧) ପ୍ରାଣୀଜ, (୨) ଉଦ୍ଭିଜ୍ଜ । ଦୁଗ୍ଧ, ଲହୁଣୀ, ଘିଅ, ଅଣ୍ଡା ଓ କଲିଜାରୁ ପ୍ରାଣୀଜ ଭିଟାମିନ୍ 'କ' ଏବଂ ପାଳଙ୍ଗ ଶାଗ, ଲଉ, ମେଥି ଶାଗ, ଗାଜର, ସଜନା ଶାଗ, ସଜନା ଛୁଇଁ ଆଦି ପନିପରିବା, ଟମାଟୋ ପାଚିଲା ଆମ୍ବ ଓ ଅମୃତ ଭଣ୍ଡାରୁ ଉଦ୍ଭିଜ୍ଜ ଭିଟାମିନ୍ 'କ' ମିଳିଥାଏ ।

ଏହି ଭିଟାମିନ୍ ଦୃଷ୍ଟି ଶକ୍ତି ଓ ଶରୀରରେ ରୋଗ ପ୍ରତିରୋଧକାରୀ ଶକ୍ତି ବଢ଼ାଏ ଏବଂ ଚର୍ମ, ଶ୍ଳୈଷ୍ମିକ ଝିଲ୍ଲୀ ଓ ଗ୍ରନ୍ଥିଗୁଡ଼ିକୁ କାର୍ଯ୍ୟକ୍ଷମ ରଖେ ।

ଏହାର ଅଭାବରେ ଅନ୍ଧାର କଣା ଓ ନାନା ପ୍ରକାର ଜଟିଳ ଚକ୍ଷୁରୋଗ ହୋଇଥାଏ । ଯଥାସମୟରେ ଚିକିତ୍ସା ନ କଲେ ଶିଶୁ ଦୃଷ୍ଟିଶକ୍ତି ହରାଏ । ବୟସ୍କ ବ୍ୟକ୍ତିମାନଙ୍କଠାରେ ମଧ୍ୟ ଏହାର ଅଭାବରେ ଅନ୍ଧତ୍ୱ ଦେଖାଦିଏ । ଅନେକ ସମୟରେ ଦେଖାଯାଏ, ଶିଶୁମାନେ ଆଳୁ ବ୍ୟତୀତ ଅନ୍ୟାନ୍ୟ ପନିପରିବା ଓ ଶାଗ ଖାଇବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସେମାନଙ୍କ ମନରେ ଶାଗ ଓ ପନିପରିବା ପ୍ରତି ଆଗ୍ରହ ସୃଷ୍ଟି କରିବା ଦାୟିତ୍ୱ ମାଆମାନଙ୍କୁ ନେବାକୁ ହେବ ।

## ଖାଦ୍ୟପ୍ରାଣ 'ଖ' ସମୂହ (Vitamin B-Complex)

ଏହା ଉଭୟ, ପ୍ରାଣୀଜ ଖାଦ୍ୟ ଯଥା—ଦୁଧ, ଅଣ୍ଡା, ମାଛ, ମାଂସ ଓ କଲିଜା, ଉଦ୍ଭିଜ୍ଜ ଖାଦ୍ୟ ଯଥା—ଢିଙ୍କିକୁଟା ଚାଉଳ, ଗହମର ଚୋକଡ଼, ଗଜାମୁଗ ଓ ବୁଟ, ଶୁଖିଲା ମଟର, ଶିମ୍ବ ମଞ୍ଜି ଓ ଚିନାବାଦାମ ପ୍ରଭୃତିରେ ମିଳେ ।

ଏହି ଖାଦ୍ୟପ୍ରାଣଗୁଡ଼ିକ ଶରୀର ବିପାକ କ୍ରିୟାରେ ସାହାଯ୍ୟ କରନ୍ତି । ଲୋହିତ ରକ୍ତକଣିକାର ପରିପକ୍ୱତା ପାଇଁ ମଧ୍ୟ ଏମାନଙ୍କର ଆବଶ୍ୟକତା ରହିଛି । ସାଧାରଣତଃ ଦରିଦ୍ର ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଏହି ଖାଦ୍ୟପ୍ରାଣ ଅଭାବ ଜନିତ ରୋଗ ହୁଏ । ଏହି ଖାଦ୍ୟପ୍ରାଣ ଅଭାବ ଜନିତ ରୋଗଗୁଡ଼ିକ ହେଲା—ବେରିବେରି, ପାଟି ଘାଆ, ଜିଭଧରା, ଓଠ ଫାଟିବା, ପାଲେଗ୍ରା, ପିତ୍ତଳା ମାରିବା, ଲୋହିତ ରକ୍ତ-କଣିକାର ଅପରିପକ୍ୱତା । ଆମ ଦେଶରେ ବେରିବେରି ରୋଗ କ୍ୱଚିତ୍ ଦେଖାଯାଏ । ଅନ୍ୟାନ୍ୟ ରୋଗଗୁଡ଼ିକ ବିଶେଷଭାବେ ପିତ୍ତଳା ମାରିବା, ପାଟି ଘାଆ, ଜିଭ ଧରା ଓ ଓଠ ଫାଟିବା ଅଭାବଗ୍ରସ୍ତ ପରିବାରର ଲୋକମାନଙ୍କ ମଧ୍ୟରେ ଦେଖାଯାଏ ।

**ଖାଦ୍ୟପ୍ରାଣ 'ଗ'** (Vitamin C)

ଏହି ଖାଦ୍ୟପ୍ରାଣ ଦନ୍ତାସ୍ଥିର ସୁସ୍ଥ ବିକାଶ, ସମସ୍ତ ବିପାକ କ୍ରିୟା ତଥା ଲାଲ ଅସ୍ଥି ମଜ୍ଜା ଓ ସଂଯୋଜକ ତନ୍ତୁର ବିକାଶରେ ସାହାଯ୍ୟ କରେ । କମଳାଲେମ୍ବୁ ଓ ଅଁଳା କୋଳି, ପିଜୁଳି, ବିଲାତି ବାଇଗଣ, ଅମୃତଭଣ୍ଡା ଇତ୍ୟାଦି ଫଳ, ସଜ ପନିପରିବା ଓ ସଜନା ଶାଗରେ ଖାଦ୍ୟପ୍ରାଣ 'ଗ' ପ୍ରଚୁର ପରିମାଣରେ ଥାଏ । ମାଆ କ୍ଷୀର ଖାଉଥିବା ଶିଶୁଠାରେ ଏହି ଖାଦ୍ୟପ୍ରାଣ ଅଭାବ ଜନିତ ରୋଗ ସହଜରେ ଦେଖାଯାଏ ନାହିଁ । ପନିପରିବା ରାନ୍ଧିବା ଦ୍ୱାରା ଏହାର ଅଧିକାଂଶ ଖାଦ୍ୟପ୍ରାଣ ନଷ୍ଟ ହୋଇଯାଏ ।

ଏହି ଖାଦ୍ୟପ୍ରାଣର ଅଭାବ ହେତୁ ସ୍କର୍ଭି ନାମକ ଏକ ରୋଗ ହୁଏ । ଛଅ ମାସରୁ ଅଠର ମାସର ଶିଶୁମାନଙ୍କୁ ଏହି ରୋଗ ହେବାର ସମ୍ଭାବନା ଥାଏ । ଗଣ୍ଠି ଗୁଡ଼ିକରେ ରକ୍ତସ୍ରାବ ହେତୁ ଏଗୁଡ଼ିକ ଫୁଲିଯାଏ । ପିଲାକୁ କୋଳକୁ ନେବାପାଇଁ ଉଠାଇଲେ ସେ ଯନ୍ତ୍ରଣାରେ କାନ୍ଦଉଠେ । ବଡ଼ ମଣିଷମାନଙ୍କଠାରେ ଏହି ଖାଦ୍ୟପ୍ରାଣର ଅଭାବ ହେତୁ ମାଢ଼ି ଫୁଲିଯାଏ ଓ ଦାନ୍ତଘଷିବା ସମୟରେ ରକ୍ତ ପଡ଼େ ।

**ଖାଦ୍ୟପ୍ରାଣ 'ଘ'** (Vitamin D)

ପ୍ରଭାତ କାଳୀନ ସୂର୍ଯ୍ୟରଶ୍ମି ଶିଶୁ ଚର୍ମ ଉପରେ ପଡ଼ିଲେ ଏହି ଖାଦ୍ୟପ୍ରାଣ ସୃଷ୍ଟି ହୁଏ । ଭାରତ ତଥା ଅନ୍ୟାନ୍ୟ ଗ୍ରୀଷ୍ମ ପ୍ରଧାନ ଦେଶମାନଙ୍କରେ ଶିଶୁଠାରେ ଏହି ଖାଦ୍ୟପ୍ରାଣର ଅଭାବ ଦେଖାଯାଏ ନାହିଁ । ଶିଶୁକୁ ତେଲ ମାଲିସ୍ କରି କଅଁଳ ଖରାରେ ଶୁଆଇବା ବ୍ୟବସ୍ଥା ପ୍ରାୟ ଘରେ ଘରେ ପ୍ରଚଳିତ । ସୂର୍ଯ୍ୟରଶ୍ମିରୁ ବଞ୍ଚିତ ହୋଇ ଆବଦ୍ଧ ଘରେ ରହୁଥିବା ଶିଶୁଠାରେ ଏହି ଖାଦ୍ୟପ୍ରାଣର ଅଭାବ ପରିଲକ୍ଷିତ ହୁଏ । ପ୍ରଭାତ ସୂର୍ଯ୍ୟରଶ୍ମି ବ୍ୟତୀତ ଲହୁଣୀ, ଅଣ୍ଡା, କଲିଜା, ମାଛ ଓ ମାଛ ତେଲରୁ ଏହା ପ୍ରଚୁର ପରିମାଣରେ ମିଳିଥାଏ । ଶିଶୁମାନଙ୍କ ଦେହରେ ସେଥିପାଇଁ ମାଛ ତେଲ ମାଲିସ୍ କରାଯାଏ । ଖାଦ୍ୟପ୍ରାଣ 'କ' ଓ 'ଘ' ଯୁକ୍ତ ତେଲ (AD Oil) ମଧ୍ୟ ଶିଶୁର ଶରୀରରେ ମାଲିସ୍ ପାଇଁ ଉପାଦେୟ ।

ଏହି ଖାଦ୍ୟପ୍ରାଣର ଅଭାବରେ ରିକେଟ୍ ନାମକ ରୋଗ ହୁଏ । ଶିଶୁର ମଣିବନ୍ଧ ଓ ଗୋଡ଼ି ନିକଟରେ ହାଡ଼ ଚଉଡ଼ା ହୋଇଯାଏ, ଆଣ୍ଠୁ ଦୁଇଟି ବଙ୍କା ହୋଇ

ପରସ୍ପର ଲାଗିଯାଏ, ଜାନୁ ହାଡ଼ ଧନୁଭଳି ବାହାର ପଟକୁ ବଙ୍କାଇଯାଏ, ଗୁଣ୍ଠ ଆଗକୁ ବାହାରି ପଡ଼େ ଓ କଟିମେଖଳା (Pelvis ର ଅସ୍ଥି ବିକଳାଙ୍ଗ ହୋଇଯାଏ । ଏହି ରୋଗାକ୍ରାନ୍ତ ପିଲାଟି ଝିଅ ହୋଇଥିଲେ ସନ୍ତାନ ଜନ୍ମ ସମୟରେ ଅସୁବିଧା ଭୋଗ କରେ ।

## ଜୀବସାର 'ଙ' (Vitamin E)

ଏହା ପ୍ରଧାନତଃ ଜାରଣ ଅବରୋଧକ (antioxidant), ଏହା ଏନ୍‌ଜାଇମ୍ ପ୍ରକ୍ରିୟାରେ ବେଗ ବଢ଼ାଏ । ଏହାର ଅଭାବରେ ବନ୍ଧ୍ୟାରୋଗ ହୁଏ । କପା ତେଲ, ଗହମ ଅଙ୍କୁରରୁ ବାହାରିଥିବା ତେଲ, ଗାଢ଼ ସବୁଜ ରଙ୍ଗର ଶାଗ, ବାଦାମ, ଗୋଟା ଡାଲି ଇତ୍ୟାଦିରେ ଏହା ଅଧିକ ପରିମାଣରେ ଥାଏ ଏବଂ ଦୁଗ୍ଧ, କଲିଜା ଅଣ୍ଡା ଆଦିରେ ମଧ୍ୟ ଏହା କିଛି ପରିମାଣରେ ଥାଏ ।

## ଖାଦ୍ୟପ୍ରାଣ 'ଟ' (Vitamin K)

ଅପରିଣତ ଓ ସ୍ୱଳ୍ପ ଓଜନ ବିଶିଷ୍ଟ ନବଜାତ ଶିଶୁଠାରେ ଏହି ଖାଦ୍ୟ-ପ୍ରାଣର ଅଭାବ ପରିଲକ୍ଷିତ ହୁଏ । ସେଥିପାଇଁ ଏହି ଶିଶୁମାନଙ୍କ ଶରୀରରୁ ଜନ୍ମର ଦ୍ୱିତୀୟରୁ ପଞ୍ଚମ ଦିବସ ମଧ୍ୟରେ ରକ୍ତସ୍ରାବ ହୋଇଥାଏ ।

ରକ୍ତ ଜମାଟ ବାନ୍ଧିବାରେ ଏହି ଖାଦ୍ୟପ୍ରାଣ ସାହାଯ୍ୟ କରେ । ତଟକା ପନିପରିବା ଓ ବିଭିନ୍ନ ପ୍ରକାର ଫଳରୁ ଏହା ମିଳେ ।

## ଧାତବ ଲବଣ ବା ଧାତୁସାର

ଏହା ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ନିତାନ୍ତ ପ୍ରୟୋଜନ । ଶରୀର ମଧ୍ୟରେ ବିଭିନ୍ନ ପ୍ରକାର ଧାତବ ଲବଣ ଅଲଗା ଅଲଗା ନ ରହି ଯୌଗିକ ଲବଣ ରୂପେ ରହିଥାଏ । ଜୀବନ ରକ୍ଷା ପାଇଁ କେତେଗୁଡ଼ିଏ ଧାତବ ଲବଣ ଅପରିହାର୍ଯ୍ୟ । ଏହି ଧାତବ ଲବଣ ଗୁଡ଼ିକୁ 'ସ୍ୱାସ୍ଥ୍ୟ ନିୟନ୍ତ୍ରଣକାରୀ' ଖାଦ୍ୟ କହନ୍ତି । ଶରୀର ମଧ୍ୟରେ ଦେହର ଓଜନର ଶତକଡ଼ା ଛଅଭାଗ ଧାତବ ଲବଣ ରହିଥାଏ । ପ୍ରତିଦିନ ପ୍ରାୟ୍ ୬୦ରୁ ୮୫ ଗ୍ରାମ୍ ବିଭିନ୍ନ ଧାତୁ ମଳ, ମୂତ୍ର ଓ ସ୍ୱେଦ ମଧ୍ୟଦେଇ ନିଷ୍କାସିତ ହୋଇଥାଏ । ଏଗୁଡ଼ିକ ଶରୀର

ମଧ୍ୟରେ ପ୍ରସ୍ତୁତ ହୋଇପାରେନା । ଏହି କ୍ଷୟର ଭରଣା ପାଇଁ ଖାଦ୍ୟ ରୂପେ ଏହି ଧାତବ ଲବଣ ଗ୍ରହଣ କରିବା ପ୍ରୟୋଜନ । ଯଥେଷ୍ଟ ପରିମାଣରେ ସ୍ୱାଭାବିକ ଖାଦ୍ୟ ଖାଉଥିବା ବ୍ୟକ୍ତି ଖାଦ୍ୟ ମଧ୍ୟରୁ ଆବଶ୍ୟକୀୟ ଧାତବ ଲବଣ ପାଇଥାଏ । ତେଣୁ ଶରୀରରେ ଧାତବ ଲବଣର ଅଭାବ ଘଟେ ନାହିଁ । ଶରୀରର କୌଣସି ଅସ୍ୱାଭାବିକତା ବା ରୋଗ ହେତୁ ଏହି ଧାତବ ଲବଣର ଅଭାବ ଘଟିଲେ ତାହା ପୂରଣ କରିବା ପାଇଁ ଔଷଧ ଆକାରରେ ସେବନ କରିବାକୁ ପଡ଼େ । ଉଦାହରଣସ୍ୱରୂପ—ହଇଜା ହେଲେ ଝାଡ଼ା ଓ ବାନ୍ତିରେ ପ୍ରଚୁର ସୋଡ଼ିଅମ୍ କ୍ଲୋରାଇଡ୍ ଶରୀରରୁ ବାହାରି ଯାଉଥିବାରୁ ଏହାର ପୂରଣ ପାଇଁ ଏହି ସାଲାଇନ୍ ଇଞ୍ଜେକ୍‌ସନ୍ ଭାବେ ଦେବା ଆବଶ୍ୟକ ହୁଏ ।

କାଲ୍‌ସିୟମ୍ (Calcium), ଫସ୍‌ଫରସ୍ (Phosphorus), ସଲ୍‌ଫର୍ (Sulphur), ମାଗ୍ନେସିୟମ୍ (Magnesium), ଆୟୋଡ଼ିନ୍ (Iodine), ସୋଡ଼ିୟମ୍ (Sodium), ପଟାସିୟମ୍ (Potassium) ଓ ଲୌହ (Iron), ଇତ୍ୟାଦି ଶରୀର ଗଠନ ପାଇଁ ମୁଖ୍ୟ ଧାତବ ଲବଣ । ବିଭିନ୍ନ ଫଳ, ବିଭିନ୍ନ ପନିପରିବା, ବିଭିନ୍ନ ଶାଗ, ଦୁଧ, ଛେନା, ଅଣ୍ଡା କେଶର, ମାଛ, ମାଂସ, ଗହମ, ଶିମ୍ବ ମଞ୍ଜି, ମଟର, ଅଳୁ, ମୂଳା, ଗାଜର, ବିଟ୍, ପିଆଜ, ରସୁଣ, ସାଲ୍‌ଗମ୍, ଛେଳିଦୁଧ ଓ ସମୁଦ୍ର ମାଛରେ ଏହି ଧାତବ ଲବଣଗୁଡ଼ିକ ମିଳିଥାଏ ।

ଅସ୍ଥି ଓ ଦାନ୍ତ ଗଠନ, ହୃତ୍‌ପିଣ୍ଡ ଓ ମାଂସପେଶୀର ସଞ୍ଚାଳନ, ରକ୍ତ ଜମାଟ ବାନ୍ଧିବା, ଶ୍ୱେତସାର ଓ ସ୍ନେହସାର ଖାଦ୍ୟ ପରିଶୋଷଣ, ସ୍ନାୟୁତନ୍ତ୍ର ଓ ଫୁସ୍‌ଫୁସ୍‌କୁ ସତେଜ ରଖିବା, ରକ୍ତର କ୍ଷାରତ୍ୱ ଓ ମୂତ୍ରର ଅମ୍ଳତ୍ୱର ସୁରକ୍ଷା, ଜୀବକୋଷ ଗଠନ, ନଖ ଓ କେଶର ପୁଷ୍ଟି, ଥାଇରଏଡ୍ ଗ୍ରନ୍ଥିର ରସ ନିଃସରଣ, ଲୋହିତ ରକ୍ତକଣିକାର ହେମୋଗ୍ଲୋବିନ୍ (Haemoglobin) ତିଆରି କରିବା ଇତ୍ୟାଦି ଏହି ଧାତବ-ଲବଣଗୁଡ଼ିକର କାର୍ଯ୍ୟ ।

## ଜଳ

ଜଳର ଅନ୍ୟନାମ ଜୀବନ । ଶରୀରରେ ଜଳର ଉପାଦେୟତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦେହର ଓଜନର ଦୁଇ-ତୃତୀୟାଂଶ ଜଳ ଅଟେ । ଏହା ସମସ୍ତ ଜୀବରସର ଆଧାର, ଧାରକ ଓ ବାହକ ଅଟେ । ଜୀବକୋଷଗୁଡ଼ିକରେ ଜଳ ଭରପୂର

ହୋଇ ରହିଥାଏ । ଶ୍ୱାସ, ସ୍ୱେଦ, ମଳ ଓ ମୂତ୍ର ଦ୍ୱାରା ଅନବରତ ଜଳ ନିଷ୍କାସିତ ହୁଏ । ଋତୁ ଅନୁଯାୟୀ ଏହି ନିଷ୍କାସନ ବେଶୀ ବା କମ୍ ହୋଇଥାଏ । ତୃଷା ଶରୀର ମଧ୍ୟରେ ଜଳାଭାବର ସଙ୍କେତ । ଦେହରେ ଜଳର ସମତା ରକ୍ଷା କରିବା ପାଇଁ ଅଧିକ ତରଳ ଖାଦ୍ୟ, କାକୁଡ଼ି, ତରଭୁଜ ଇତ୍ୟାଦି ଫଳ ଖାଇବା ଉଚିତ ଏବଂ ତୃଷା ମେଣ୍ଟିବା ଯାଏ ଏହା ଖାଇବା ବିଧେୟ । ଶରୀର ମଧ୍ୟରେ ଘଟୁଥିବା ବିପାକ କ୍ରିୟା ହେତୁ ସୃଷ୍ଟି ହେଉଥିବା ଅନାବଶ୍ୟକ ପଦାର୍ଥ ସବୁ ମଳ, ମୂତ୍ର, ସ୍ୱେଦ ଇତ୍ୟାଦି ମାଧ୍ୟମରେ ଶରୀରରୁ ନିଷ୍କାସିତ ହୋଇଥାଏ ଓ ଶରୀରକୁ ସୁସ୍ଥ ରଖେ । ଅତିସାର (diarrhoea), ନାଲରକ୍ତ ଝାଡ଼ା (dysentery), ଓ ପୋଲିଓ ଜଳବାହିତ ରୋଗ । ବିଶୋଧିତ ଜଳପାନ କଲେ ଏହି ରୋଗ ହେବାର ଆଶଙ୍କା ନ ଥାଏ ।

## ଶିଶୁମାନଙ୍କ ଖାଦ୍ୟରେ ପୁଷ୍ଟିର ଉପାଦାନ

ଶିଶୁ ହିଁ ଦେଶର ଭବିଷ୍ୟତ ନାଗରିକ, ପିତାମାତାଙ୍କର ଆଶା ଭରସାର ସ୍ଥଳୀ । ଉତ୍ତମ ସ୍ୱାସ୍ଥ୍ୟ ତଥା ଉପଯୁକ୍ତ ଶାରୀରିକ ଓ ମାନସିକ ଅଭିବୃଦ୍ଧି ଶିଶୁକୁ ଏକ ସୁସ୍ଥ-ସବଳ ମଣିଷରେ ପରିଣତ କରେ । ଯେଉଁ ଦେଶର ଶିଶୁ ଯେତେ ସୁସ୍ଥ ସବଳ ସେ ଦେଶର ଭବିଷ୍ୟତ, ସାମାଜିକ ତଥା ଅର୍ଥନୈତିକ ଦୃଷ୍ଟିକୋଣରୁ ସେତେ ଉଜ୍ଜ୍ୱଳ । ଏହି ଦୃଷ୍ଟିରୁ ଶିଶୁମାନଙ୍କର ଶାରୀରିକ ପୁଷ୍ଟତା ତଥା ସର୍ବାଙ୍ଗୀନ ଉନ୍ନତି ପାଇଁ ଧ୍ୟାନ ଦେବା ପ୍ରୟୋଜନ ।

ଶିଶୁମାନଙ୍କ ପାଇଁ ଖାଦ୍ୟରେ ପୁଷ୍ଟିର ଉପାଦାନ ବିଷୟ ଆଲୋଚନା କଲାବେଳେ ପ୍ରଥମେ ଦେଖିବାକୁ ହେବ କେଉଁ ପ୍ରକାର ଖାଦ୍ୟ ଶିଶୁ ପାଇଁ ପ୍ରୟୋଜନ । ଶିଶୁର ବିକାଶ ଓ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ପାଇଁ ଶିଶୁ ନିମନ୍ତେ କି ପ୍ରକାର ନିର୍ଦ୍ଦିଷ୍ଟ ଧରଣର ଖାଦ୍ୟ ପ୍ରୟୋଜନ । ଶିଶୁର ଜନ୍ମ ପରେ ବୟୋବୃଦ୍ଧିର ବିଭିନ୍ନ ଅବସ୍ଥାରେ ଏହି ଖାଦ୍ୟ ଭିନ୍ନ ଭିନ୍ନ ହୋଇଥାଏ ।

ନବଜାତ ଶିଶୁ ପାଇଁ ମାଆ କ୍ଷୀର ସବୁଠାରୁ ଉପାଦେୟ ଖାଦ୍ୟ । ଏହା ପ୍ରାକୃତିକ, ସ୍ୱାଭାବିକ ଜୀବାଣୁ ମୁକ୍ତ, ପୂର୍ବବର୍ଣ୍ଣିତ ସମସ୍ତ ପ୍ରକାର ଖାଦ୍ୟସାର ପୂର୍ଣ୍ଣ ଓ ସହଜରେ ହଜମ ହୋଇପାରେ । ତେଣୁ ପ୍ରତ୍ୟେକ ସୁସ୍ଥ ମାଆ ଶିଶୁ ସନ୍ତାନକୁ ସ୍ତନ୍ୟ-ପାନ କରାଇବା ଉଚିତ । ଏହା ବ୍ୟତୀତ ସ୍ତନ୍ୟପାନ ଦ୍ୱାରା ମାଆ ଓ ଶିଶୁ ମଧ୍ୟରେ

ସ୍ନେହ ମମତାର ସମ୍ପର୍କ ଦୃଢ଼ୀଭୂତ ହୋଇଥାଏ । ଏହି ଦୃଷ୍ଟିରୁ ପ୍ରତ୍ୟେକ ଗର୍ଭବତୀ ନାରୀ ନିଜ ସନ୍ତାନର ହିତ ପାଇଁ ଖୁସି ମନରେ ସ୍ତନ୍ୟପାନ କରାଇବା ପାଇଁ ମାନସିକ ଭାବେ ପ୍ରସ୍ତୁତ ରହିବା ବିଧେୟ ।

## ସ୍ତନ୍ୟପାନ

ସୁସ୍ଥ ଶିଶୁ ଜନ୍ମ ପରେ ପରେ ଖୁବ୍ ଚଞ୍ଚଳ ଥାଏ ଓ ସହଜରେ ମାଆ ସ୍ତନ ଚୁଚୁମିପାରେ । ତେଣୁ ଶିଶୁ ଜନ୍ମହେବା ସଙ୍ଗେ ସଙ୍ଗେ ତାକୁ ମାଆ ସ୍ତନ ଚୁଚୁମିବାକୁ ଦେବା ଉଚିତ । ମାଆ ସ୍ତନରେ ଅଳ୍ପ କ୍ଷୀର ଥିଲେ ମଧ୍ୟ ଏହା ଦ୍ୱାରା ମାଆ ମନରେ ଆଗ୍ରହ ସୃଷ୍ଟି ହୁଏ ଓ ପ୍ରତିକ୍ଷେପ କ୍ରିୟା ଦ୍ୱାରା ସ୍ତନରୁ କ୍ଷୀର ନିସୃତ ହୋଇଥାଏ । ଶିଶୁ ଯେତେ ଶୀଘ୍ର ମାଆ ସ୍ତନ ଚୁଚୁମିବା ଆରମ୍ଭ କରେ ସେତେ ଶୀଘ୍ର କ୍ଷୀରର ପରିମାଣ ବୃଦ୍ଧି ହୁଏ ।

## ମାଆ କ୍ଷୀରର ଉପକାରିତା

ଶିଶୁର ଜନ୍ମ ପରେ ପରେ ଯେଉଁ କ୍ଷୀର ନିର୍ଗତ ହୁଏ ତାହାକୁ କଷ କ୍ଷୀର ବା ଆଦ୍ୟ କ୍ଷୀର କହନ୍ତି । ଏହା ଦେଖିବାକୁ ଈଷତ୍ ହଳଦିଆ ବୋଲି କଷକ୍ଷୀର କୁହାଯାଏ । ଏହା ଜନ୍ମର ପ୍ରଥମ ସପ୍ତାହ ମଧ୍ୟରେ ଝରିଥାଏ । କ୍ରମଶଃ ଏହା ଧଳାରଙ୍ଗ ଧାରଣ କରେ । ଏହି ଧଳାରଙ୍ଗର କ୍ଷୀରକୁ ସ୍ୱାଭାବିକ କ୍ଷୀର କହନ୍ତି । କଷକ୍ଷୀର ଶିଶୁର ସ୍ୱାସ୍ଥ୍ୟ ପାଇଁ ଉପାଦେୟ । ସ୍ୱାଭାବିକ ଦୁଗ୍‌ଧରେ ପୁଷ୍ଟିସାର ଶତକଡ଼ା ଏକଭାଗ ଥିବା-ବେଳେ ଏଥିରେ ତାହା ଶତକଡ଼ା ୧୦ ଭାଗ ଥାଏ । ଏହା ବ୍ୟତୀତ କଷକ୍ଷୀର ନବଜାତ ଶିଶୁର ରୋଗ ପ୍ରତିରୋଧ ଶକ୍ତି ବୃଦ୍ଧି କରେ । ଅଧିକାଂଶ ମାଆ କଷକ୍ଷୀରର ଉପକାରିତା ସମ୍ବନ୍ଧରେ ଅଜ୍ଞ ଥିବା ହେତୁ ବା ଭ୍ରାନ୍ତ ଧାରଣା ବଶତଃ ଏହା ଫିଙ୍ଗି ଦିଅନ୍ତି । ସେମାନଙ୍କର ଧାରଣା, ଏହା ଶିଶୁ ପାଇଁ ହାନିକାରକ । ତେଣୁ ଜନ୍ମର ପ୍ରଥମ ଦୁଇ ତିନିଦିନ ମହୁ ପାଣି ବା ଗୁଡ଼ ପାଣି ପିଆଇ ଥାଆନ୍ତି । କିନ୍ତୁ ଏହା ପିଆଇବା ପାଇଁ ବ୍ୟବହୃତ ଗୁମୁଚ, ଶାମୁକା ବା ତୁଳା ଅପରିଷ୍କାର ହୋଇଥିବାରୁ ଶିଶୁ ସଂକ୍ରମଣ-ଜନିତ ଅତିସାର ରୋଗ ହେବିବାର ସମ୍ଭାବନା ଥାଏ । ଏହା ବ୍ୟତୀତ ଶିଶୁ ମାଆ କ୍ଷୀର ନ ଚୁଚୁମିଲେ କ୍ଷୀର ନିର୍ଗତ ହେବାରେ ବିଳମ୍ବ ହୁଏ ।

ଶିଶୁ ଜନ୍ମର ପ୍ରଥମ ସପ୍ତାହର ଶେଷ ଭାଗରେ ମାଆ ସ୍ତନରୁ ସ୍ୱାଭାବିକ ଦୁଗ୍ଧ ନିର୍ଗତ ହୋଇଥାଏ । ଏହାର ପରିମାଣ କ୍ରମେ ବଢ଼େ । ମାଆ କ୍ଷୀର ଚତୁଷ୍ପଦ ପ୍ରାଣୀମାନଙ୍କ କ୍ଷୀର ଠାରୁ ଭିନ୍ନ । ଶିଶୁର ପୁଷ୍ଟି ତଥା ଅଭିବୃଦ୍ଧି ପାଇଁ ମାଆ କ୍ଷୀରରେ ସମସ୍ତ ପ୍ରକାର ଆବଶ୍ୟକ ଉପାଦାନ ଉଚିତ ଅନୁପାତରେ ଥାଏ । ମାଆ କ୍ଷୀରରେ ଥିବା ପୁଷ୍ଟିସାର ଲାକ୍ଟ-ଆଲ୍‌ବୁମିନ୍ ଜାତୀୟ ହୋଇଥିବାରୁ ଏହା ସହଜରେ ହଜମ ହୁଏ । ସେହିପରି ମାଆ କ୍ଷୀରରେ ଥିବା ସ୍ନେହସାର ଓ ଦୁଗ୍ଧ ଶର୍କରା ଅଂଶ ମଧ୍ୟ ଶିଶୁ ସହଜରେ ହଜମ କରିପାରେ । ଦୁଗ୍ଧ ଶର୍କରାର କିଛି ଅଂଶ ଅନ୍ତନଳୀ ମଧ୍ୟରେ ଲାକ୍ଟିକ୍ ଏସିଡ୍‌ରେ ପରିଣତ ହୁଏ । ଫଳତଃ ଏଠାରେ କ୍ଷତିକାରକ ରୋଗଜୀବାଣୁମାନଙ୍କର ବଂଶ ବୃଦ୍ଧିରେ ବାଧା ସୃଷ୍ଟି ହୁଏ । ଏହି ଏସିଡ୍ ଅନ୍ତନଳୀକୁ କାଲ୍‌ସିୟମ୍ ଲବଣ ଶୋଷଣରେ ସାହାଯ୍ୟ କରେ । ଶିଶୁକୁ ଚାରି ପାଞ୍ଚ ମାସ ହେବା ପର୍ଯ୍ୟନ୍ତ ଆବଶ୍ୟକ ସମସ୍ତ ଖାଦ୍ୟପ୍ରାଣ ମାଆ କ୍ଷୀରରୁ ମିଳେ । କାଲ୍‌ସିୟମ୍, ସୋଡ଼ିୟମ୍, ପଟାସିୟମ୍, ଫସ୍‌ଫରସ୍, କ୍ଲୋରିନ୍, ଓ ଲୌହ ସାର ଇତ୍ୟାଦି ଧାତବସାର ମାଆ କ୍ଷୀରରେ ଅଳ୍ପ ପରିମାଣରେ ଥିଲେ ମଧ୍ୟ ତାହା ଶିଶୁର ପ୍ରୟୋଜନ ପାଇଁ ଯଥେଷ୍ଟ । ମାଆ କ୍ଷୀର ଖାଉଥିବା ଶିଶୁ ଅନ୍ୟାନ୍ୟ କ୍ଷୀର ଖାଉଥିବା ଶିଶୁମାନଙ୍କ ତୁଳନାରେ ପେଟ ଯନ୍ତ୍ରଣା କମ୍ ଭୋଗନ୍ତି । ଏମାନଙ୍କ ଦେହରେ ଏକ୍‌ଜିମା ଓ ଏଲର୍ଜି ରୋଗ ମଧ୍ୟ କମ୍ ହୁଏ । ମାଆ କ୍ଷୀର ଖାଉଥିବା ଶିଶୁଠାରେ ପ୍ରଥମ ଛଅମାସ ମଧ୍ୟରେ ପୁଷ୍ଟିହୀନତା ହୁଏ ନାହିଁ ।

## ମାଆ କ୍ଷୀର : ଭିନ୍ନ ଶିଶୁ ପାଇଁ ଅନ୍ୟାନ୍ୟ କ୍ଷୀର

ପୂର୍ବରୁ କୁହାଯାଇଛି ମାଆ କ୍ଷୀର ଶିଶୁ ପାଇଁ ଏକ ଉତ୍ତମ ଖାଦ୍ୟ । କିନ୍ତୁ କୌଣସି କାରଣରୁ ଶିଶୁ ମାଆ କ୍ଷୀରରୁ ବଞ୍ଚିତ ହେଲେ ତାକୁ ଅନ୍ୟାନ୍ୟ କ୍ଷୀର ଦିଆଯାଇପାରେ । ଯଥା—ବଜାରରେ ମିଳୁଥିବା ଗୁଣ୍ଡ କ୍ଷୀର, ଛେଳି କ୍ଷୀର, ଗାଈ ଓ ମଇଁଷି କ୍ଷୀର ।

ବାହାର କ୍ଷୀରର କେତେକ ଅପକାରିତା ରହିଛି । ଦରିଦ୍ର ପରିବାର ପକ୍ଷରେ ଗାଈ ମଇଁଷି କ୍ଷୀର କିଣିବା ଅର୍ଥାଭାବ ଦୃଷ୍ଟିରୁ ଅସୁବିଧାଜନକ । କ୍ଷୀର ପ୍ରସ୍ତୁତ ପାଇଁ ଉପଯୁକ୍ତ ପାତ୍ର ଓ ଜାଳେଣି ଇତ୍ୟାଦି କିଣିବା ପାଇଁ ମଧ୍ୟ ଅର୍ଥ ଆବଶ୍ୟକ । ଅର୍ଥାଭାବ ଯୋଗୁଁ ଆବଶ୍ୟକ ପରିମାଣ ଖାଣ୍ଟି କ୍ଷୀର କିଣି ନ ପାରି ଅଳ୍ପ କ୍ଷୀର ସହିତ

ଅଧିକ ପାଣି ମିଶାଇ ଶିଶୁକୁ ଖାଇବାକୁ ଦେଇଥାନ୍ତି । ଯାହା ଫଳରେ କି ସେ ଦୁର୍ବଳ ଓ ରୁଗ୍ଣ ହୋଇପଡ଼େ । ତାହାର କ୍ଷୀର ଦେବା ଆବଶ୍ୟକ ହେଲେ ସ୍ୱାସ୍ଥ୍ୟ ସମ୍ମତ ଭାବେ ଏହା ପ୍ରସ୍ତୁତ କରିବା ପ୍ରଣାଳୀ ଜାଣି ନେବାକୁ ପଡ଼ିବ । ସହଜରେ ପରିଷ୍କାର କରିଯାଇ ପାରିବା ପାତ୍ର ଓ ଚଉଡ଼ା ମୁହଁ ଥିବା ବୋତଲ, ଯାହା ସହଜରେ ପରିଷ୍କାର ହୋଇପାରିବ, କ୍ଷୀର ପ୍ରସ୍ତୁତ ଓ କ୍ଷୀର ପିଆଇବା ପାଇଁ ବ୍ୟବହାର କରିବା ଉଚିତ । ବୋତଲ ଓ ବୋତଲରେ ଲାଗୁଥିବା ରବର ଭୃଣ୍ଡି ପରିଷ୍କାର ନ ହେଲେ ସଂକ୍ରମଣ ଜନିତ ଅତିସାର ରୋଗ ହୋଇଥାଏ । ସେଥିପାଇଁ କ୍ଷୀର ପିଆଇବା ପାଇଁ ଗିନା ଓ ଚାମଚର ବ୍ୟବହାର ସବୁଠାରୁ ଭଲ । କାରଣ ଏହା ସହଜରେ ପରିଷ୍କାର କରିଯାଇ-ପାରେ । ବୋତଲ ବା ଗିନା ଓ ଚାମଚ ୧୫ ମିନଟ୍ ପାଣିରେ ଫୁଟାଇ ଜୀବାଣୁ ମୁକ୍ତ କରିବା ପରେ ବ୍ୟବହାର କରିବା ଉଚିତ । ପ୍ରତ୍ୟେକ ଥର ଖୁଆଇବା ପୂର୍ବରୁ କ୍ଷୀର ତିଆରି କରିବା ସଙ୍ଗେ ସଙ୍ଗେ ଖୁଆଇବା ପାତ୍ର ମଧ୍ୟ ଜୀବାଣୁ ମୁକ୍ତ କରିବା ପ୍ରୟୋଜନ । ପୂର୍ବ ଥରର ଖାଦ୍ୟ ବଳକା ରହିଥିଲେ ତାହା ଖୁଆଇବା ଉଚିତ ନୁହେଁ ।

## ଶିଶୁର ଅତିରିକ୍ତ ଖାଦ୍ୟ

ସାଧାରଣତଃ ସ୍ତନମାସରୁ ଛଅମାସ ପର୍ଯ୍ୟନ୍ତ ଶିଶୁର ବୃଦ୍ଧି ଅନୁଯାୟୀ ସମସ୍ତ ଶକ୍ତି ଓ ପୁଷ୍ଟି ମାଆ କ୍ଷୀରରୁ ମିଳିଥାଏ । ଏହା ପରେ କ୍ରମ ବର୍ଦ୍ଧିଷ୍ଣୁ ଶିଶୁ ପାଇଁ ମାଆ କ୍ଷୀର ସହିତ ଅନ୍ୟାନ୍ୟ ତରଳ ଖାଦ୍ୟ ଦେବା ପ୍ରୟୋଜନ ହୋଇଥାଏ । ତେଣୁ ଏ ସମୟରେ ଆଳୁ ସିଝା, ସୁଜି କ୍ଷୀରି, ଚାଉଳ କ୍ଷୀରି, ଖିଚୁଡ଼ି, ପାଚିଲା କଦଳୀ, ଅମୃତଭଣ୍ଡା ଓ ପରିବା ସିଝା ଭଲଭାବେ ଚକଟି ଶିଶୁକୁ ଖୁଆଇବା ପ୍ରୟୋଜନ । ଆମ ସମାଜରେ ପ୍ରଚଳିତ ଅନ୍ନପ୍ରାଶନ ଶିଶୁକୁ ବର୍ଷେ ହେବା ପରେ କରିବା ଦ୍ୱାରା ଛଅମାସ ମଧ୍ୟରେ କଲେ ତାହାର ଶରୀର ପାଇଁ ଶକ୍ତି ଓ ପୁଷ୍ଟିର ବୃଦ୍ଧି ମେଣ୍ଟି-ପାରନ୍ତା । ଏତେ ଶୀଘ୍ର ତରଳ ଖାଦ୍ୟ ଖାଇଲେ ପେଟ ତାହାର ପଡ଼େ ଓ ଖାଦ୍ୟ ହଜମ ହୁଏ ନାହିଁ—ଏହି ଭ୍ରମାତ୍ମକ ଧାରଣା ମନରୁ ଦୂର କରିବା ଉଚିତ ।

ମାଆ କ୍ଷୀର ଖାଇବାର ଏକ ଘଣ୍ଟା ପରେ ପିଲା ମାଆ କ୍ଷୀର ଖାଇ ଖୁସିଥିବା ଅବସ୍ଥାରେ ଏହି ଅତିରିକ୍ତ ଖାଦ୍ୟ ଦେବା ବାଞ୍ଛନୀୟ । ଏହି ସମୟରେ ନୂତନ ଖାଦ୍ୟ ଦେଲେ ଓ ତାହା ସ୍ୱାଦିଷ୍ଟ ହୋଇଥିଲେ ଶିଶୁ ତାହା ଅଳ୍ପ ଅଳ୍ପ ଖାଇଥାଏ । ଏହି ଅତିରିକ୍ତ ଖାଦ୍ୟ ବୋତଲରେ ଦେବା ଅନୁଚିତ । ପ୍ରଥମେ ଶିଶୁ ଏହି ଖାଦ୍ୟ ଖାଇବାକୁ

ଆଗ୍ରହ ପ୍ରକାଶ କରେ ନାହିଁ । ତେଣୁ ଗୋଟିଏ ପ୍ରକାର ଖାଦ୍ୟ ବଦଳାଇ ଅନ୍ୟ ଏକ ପ୍ରକାର ଖାଦ୍ୟ ମାଆମାନେ ଦେଇଥାନ୍ତି । ଏପରି ନକରି ସେହି ଖାଦ୍ୟ ଚାମଚରେ ଅଳ୍ପ ଅଳ୍ପ ଢୋକ ଖାଇ ଶିଖିବା ପାଇଁ ଅଭ୍ୟାସ କରାଇବା ଉଚିତ । ସେଥିପାଇଁ ମାଆର ଧୈର୍ଯ୍ୟ ରହିବା ପ୍ରୟୋଜନ । କ୍ରମେ ଶିଶୁର ବହଳ ଖାଦ୍ୟ ପ୍ରତି ରୁଚି ବଢ଼େ । ଏପରିଭାବେ ଗୋଟିଏ ପ୍ରକାର ଖାଦ୍ୟ କିଛି ଦିନ ଦେବା ପରେ ଅନ୍ୟାନ୍ୟ ପ୍ରକାର ଖାଦ୍ୟ ଦେବା ଉଚିତ । ଶିଶୁ ପୁରାପୁରି ବହଳ ଖାଦ୍ୟରେ ଅଭ୍ୟସ୍ତ ହୋଇଗଲେ ପରିମାଣ ଓ ଘନତ୍ୱ ବଢ଼ାଇବା ପ୍ରୟୋଜନ । ଜବରଦସ୍ତି କରି ବା ଖୋସାମତ କରି ନ ଖୁଆଇ ଖାଦ୍ୟ ପ୍ରତି ଆଗ୍ରହ ସୃଷ୍ଟି କରିବା ଆବଶ୍ୟକ । ଅନ୍ୟମାନଙ୍କ ସହିତ ଶିଶୁକୁ ଖାଇବାକୁ ଦେଇ ଚାମଚ ବା ହାତରେ ଖାଇବା ପାଇଁ ଉତ୍ସାହିତ କଲେ ସେ ନିଜେ ଖାଇବାକୁ ଶିଖେ ଓ କ୍ରମେ ପେଟପୁରା ଖାଇପାରେ । ଏକ ବର୍ଷର ଶିଶୁ ଦୈନିକ ଆବଶ୍ୟକ କରୁଥିବା ଶକ୍ତିର ପରିମାଣ ଜଣେ ପ୍ରାପ୍ତ ବୟସ୍କ ପାଇଁ ଉଦ୍ଦିଷ୍ଟ ଶକ୍ତିର ଏକ ତୃତୀୟାଂଶ । ଏହି ଶକ୍ତି ସଂଗ୍ରହ ପାଇଁ ପ୍ରଚୁର ଖାଦ୍ୟର ଆବଶ୍ୟକତା ପଡ଼େ । ଏକା ଥରକେ ବେଶୀ ଖାଦ୍ୟ ଖାଇବାକୁ ଦେବା ଆବଶ୍ୟକ । ଖାଦ୍ୟରେ ଘିଅ, ଲହୁଣୀ ଓ ତେଲ ଇତ୍ୟାଦି "ଘନୀଭୂତ ଶକ୍ତି ପ୍ରଦାୟିକା" ପଦାର୍ଥ ମିଶାଇବା ଉଚିତ୍ । ଦାନ୍ତ ଉଠିବା ସମୟରେ ବିସ୍କୁଟ ଓ ଅନ୍ୟାନ୍ୟ ଟାଣ ଖାଦ୍ୟ ଦେଲେ ଶିଶୁ ତାହା ମାଢ଼ିରେ ରେକେଟିବା ଫଳରେ ମାଢ଼ି ପତଳା ହୋଇଯାଏ ଓ ଦାନ୍ତ ଉଠିବାରେ କଷ୍ଟ ହୁଏ ନାହିଁ ।

ଶିଶୁର ଶାରୀରିକ ଓ ମାନସିକ ବଢ଼ନ୍ତି ଅବସ୍ଥାରେ ତାହାର ଖାଦ୍ୟରେ ଉଚିତ ଅନୁପାତରେ ସମସ୍ତ ପ୍ରକାର ଖାଦ୍ୟସାର, ଭିଟାମିନ୍, ଜଳ ଓ ଧାତବସାର ରହିବା ବାଞ୍ଛନୀୟ । ଏପରି ଖାଦ୍ୟକୁ ସୁଷମ ଖାଦ୍ୟ କହନ୍ତି । ଏଣୁ ପ୍ରତ୍ୟେକ ମାଆଙ୍କର ସୁଷମ ଖାଦ୍ୟ ପ୍ରସ୍ତୁତ ସମ୍ବନ୍ଧରେ ଆବଶ୍ୟକ ଜ୍ଞାନ ରହିବା ଉଚିତ୍ ।

## ଶିଶୁ ଜନ୍ମର ପୂର୍ବ ଓ ପରବର୍ତ୍ତୀ ବୃଦ୍ଧି ଓ ବିକାଶ

ଜୀବବିଦ୍ୟାବିତ୍‌ମାନଙ୍କ ମତରେ ମାତୃଗର୍ଭରେ ଭ୍ରୂଣ ସଞ୍ଚାର ସମୟରୁ ହିଁ ଜୀବନର ପ୍ରାରମ୍ଭ । ସାଧାରଣତଃ ମାତୃ ଗର୍ଭରେ ପ୍ରାୟ ନଅ ମାସ ବୃଦ୍ଧି ଓ ବିକାଶ ପରେ ଶିଶୁ ଜନ୍ମ ଲାଭ କରିଥାଏ । ମାତୃଗର୍ଭରେ ଏହାର ବୃଦ୍ଧି ଅତ୍ୟନ୍ତ ଦ୍ରୁତ ହୋଇଥାଏ ।

## ଶିଶୁ ଜନ୍ମ ପୂର୍ବରୁ ଓ ପରେ ମାଆର ଯତ୍ନ

ମାତୃତ୍ୱ ନାରୀ ଜାତିର ଏକ ଗୌରବ । ଏହା ତାହା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା । କିନ୍ତୁ ଏହି ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ ପାଇଁ ଗର୍ଭବତୀ ମାଆର ପର୍ଯ୍ୟାପ୍ତ ମାନସିକ ପ୍ରସ୍ତୁତି ଓ ଜ୍ଞାନ ରହିବା ପ୍ରୟୋଜନ । ଜରାୟୁ ମଧ୍ୟରେ ଭ୍ରୁଣର ଯେପରି କୌଣସି କ୍ଷତି ନହୁଏ ଏବଂ ଏହା ସ୍ୱାଭାବିକ ଅଭିବୃଦ୍ଧି ଲାଭ କରେ ସେ ଦିଗରେ ଲକ୍ଷ୍ୟ ରଖିବା ମାତାର ପ୍ରଧାନ କର୍ତ୍ତବ୍ୟ ।

ପୁରୁଷର ଶୁକ୍ରାଣୁ ଓ ସ୍ତ୍ରୀର ଡିମ୍ବାଣୁ ସଂଯୋଗ ଫଳରେ ସ୍ତ୍ରୀର ଜରାୟୁରେ ଡିମ୍ବକୋଷର ସୃଷ୍ଟିକୁ ଗର୍ଭସଂଚାର କହନ୍ତି । ଏହି ଡିମ୍ବକୋଷ ଏତେ କ୍ଷୁଦ୍ର ଯେ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟ ବ୍ୟତୀତ ଖାଲି ଆଖିରେ ଏହା ଦେଖାଯାଏ ନାହିଁ ।

ଗର୍ଭସଂଚାରର ପ୍ରଥମ ଅବସ୍ଥାରେ ମାଆଙ୍କର ବାନ୍ତି ହେବା ଏକ ସ୍ୱାଭାବିକ କଥା । ଏହି ସମୟରେ ମାଆ ଯାହା ଖାଏ ପ୍ରାୟ ସବୁ ବାନ୍ତି କରି ପକାଏ । ଫଳରେ ସେ ଦୁର୍ବଳ ହୋଇପଡ଼େ । ତରଳ ମିଲ୍କ ଅଫ୍ ମାଗ୍ନେସିଆ ଏହି ସମୟ ପାଇଁ ଅତ୍ୟନ୍ତ ଉପାଦେୟ । ଏଥିରୁ କିଛି ଓ ଏକ ଚାମଚ ଗ୍ଲୁକୋଜ ଏକ ଗ୍ଲାସ ପାଣିରେ ଫେଣ୍ଟି ସକାଳେ ପ୍ରଥମେ ପିଇଲେ ଯଥେଷ୍ଟ ଉପକାର ମିଳେ । ଗର୍ଭ ସଂଚାର ଲକ୍ଷଣ ପ୍ରକାଶ ପାଇବା ପରେ ପ୍ରସୂତି ବିଦ୍ୟା ବିଶେଷଜ୍ଞ ଡାକ୍ତରଙ୍କ ସହିତ ପରାମର୍ଶ କରି ତାଙ୍କ ନିର୍ଦ୍ଧାରିତ ସମୟରେ ମଝିରେ ମଝିରେ ଭ୍ରୁଣର ଅଭିବୃଦ୍ଧି ବିଷୟ ଜାଣି ନେବାକୁ ହେବ । ଶିଶୁ ଜନ୍ମର ଆନୁମାନିକ ତାରିଖ ମଧ୍ୟ ଜାଣି ରଖିବା ପ୍ରୟୋଜନ । ଏହି ସମୟରେ ଅଧିକ ପରିଶ୍ରମ, ଘରକରଣାର ଭାରି କାମ, ରାଗ, ଘୃଣା, ଅତ୍ୟଧିକ ମାନସିକ ଚାପ ଓ ଉତ୍ତେଜନା ବର୍ଜ୍ଜନ କରିବା ଉଚିତ । ଡାକ୍ତରଙ୍କ ସହିତ ପରାମର୍ଶ କରି ରୁଚି ଅନୁସାରେ ପୁଷ୍ଟିକର ତଥା କୋଷ୍ଠ କାଠିନ୍ୟ ନହେବା ଭଳି ଖାଦ୍ୟ ଖାଇବା ଉଚିତ । ଡାକ୍ତରଙ୍କ ପରାମର୍ଶ କ୍ରମେ ନିର୍ଦ୍ଦିଷ୍ଟ ବ୍ୟାୟାମ ଓ କିଛି ହାଲୁକା ଘରକରଣା କାମ କରିବା ଉଚିତ । ମାଆର ଅବସ୍ଥା ଅନୁଧ୍ୟାନ କରି ପ୍ରୟୋଜନୀୟ ଖାଦ୍ୟ ସହିତ ଭିଟାମିନ୍, କାଲ୍‌ସିୟମ୍ ଓ ଲୌହ ଧାତୁସାରଯୁକ୍ତ ଔଷଧ ସେବନ କରିବା ପାଇଁ ଡାକ୍ତରମାନେ ପରାମର୍ଶ ଦେଇଥାନ୍ତି । ଗର୍ଭାବସ୍ଥାରେ ଡାକ୍ତରଙ୍କ ବିନା ପରାମର୍ଶରେ କୌଣସି ଔଷଧ ଖାଇବା ଉଚିତ ନୁହେଁ । କେତେକ କଡ଼ା ଔଷଧ ଭ୍ରୁଣର ଅଭିବୃଦ୍ଧିରେ ବ୍ୟାଘାତ ଘଟାଏ । ଏହା ଫଳରେ ଶିଶୁ ବିକଳାଙ୍ଗ ହେବାର ଆଶଙ୍କା

ଥାଏ । ତେଣୁ ଏହି ସମୟରେ ମାଆ ଅସୁସ୍ଥ ହେଲେ ଡାକ୍ତରଙ୍କ ସହିତ ପରାମର୍ଶ କରିବା ଉଚିତ । ଶ୍ରମକାର୍ଯ୍ୟ କରୁଥିବା ମାଆ ଶିଶୁ ଜନ୍ମର କେତେ ଦିନ ପୂର୍ବରୁ ପ୍ରସବ-କାଳୀନ ବିଶ୍ରାମ ନେବେ ତାହା ଡାକ୍ତରଙ୍କଠାରୁ ଜାଣିନେଇ ତଦନୁଯାୟୀ ବିଶ୍ରାମ ନେବାକୁ ହେବ ।

ପୂର୍ବରୁ କୁହାଯାଇଛି, ଖାଲି ଆଖିରେ ଡିମ୍ବକୋଷ ଦେଖାଯାଏ ନାହିଁ । ଗର୍ଭ ସଞ୍ଚାରର ଦ୍ୱିତୀୟ ସପ୍ତାହରେ ଏହାର ପରିବର୍ତ୍ତନ ଘଟେ । ଏହାକୁ ଭ୍ରୂଣ (Foetus) କହନ୍ତି । ଦୁଇ ସପ୍ତାହ ପରେ ଆଦି କୋଷର ବିଭାଜନ ଫଳରେ ଭ୍ରୂଣରେ ବିଭିନ୍ନ ତନ୍ତୁର ସୃଷ୍ଟି ହୁଏ । ଏହି ତନ୍ତୁଗୁଡ଼ିକର କ୍ରମ ପରିବର୍ତ୍ତନ ଫଳରେ ମାନବ ଶିଶୁର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ରୂପ ନିଅନ୍ତି । ଆଠ ସପ୍ତାହ ଶେଷରେ ଭ୍ରୂଣର ଦୈର୍ଘ୍ୟ ୨.୫ ସେ:ମି: ଓ ଓଜନ ପ୍ରାୟ ଏକଗ୍ରାମ୍ ଥାଏ । ୧୨ ସପ୍ତାହ ବେଳକୁ ଏହା ଯଥା-କ୍ରମେ ୭.୫ ସେ:ମି· ଓ ୧୪ ଗ୍ରାମ୍ ହୁଏ । ପ୍ରଥମ ୧୨ ସପ୍ତାହ ମଧ୍ୟରେ ହୃତ୍‌ପିଣ୍ଡ, ଶ୍ୱାସଯନ୍ତ୍ର, ପରିପାକ ପ୍ରଣାଳୀ ଓ ସ୍ନାୟୁ ମଣ୍ଡଳୀର ଗଠନ ପ୍ରକ୍ରିୟା ଆରମ୍ଭ ହୋଇଯାଏ । ଭ୍ରୂଣ ସଞ୍ଚାରର ତିନିମାସ ମଧ୍ୟରେ ଗର୍ଭବତୀର ରୁବେଲା, ଅପୁଷ୍ଟି, ମାନସିକ ଚାପ, ଉପଦଂଶ, କଟୁ ଔଷଧ ବା ନିଶାଦ୍ରବ୍ୟ ସେବନ ଇତ୍ୟାଦି ହେତୁ ଭ୍ରୂଣ ଉପରେ ପ୍ରତିକୂଳ ପ୍ରଭାବ ପଡ଼େ । ଫଳରେ ଭ୍ରୂଣର ସ୍ୱାଭାବିକ ଅଭିବୃଦ୍ଧି ବାଧାପ୍ରାପ୍ତ ହୁଏ ଏବଂ ଶିଶୁର ଜନ୍ମ ପରେ ଶାରୀରିକ ଓ ମାନସିକ ଅପୂର୍ଣ୍ଣତା ଦେଖାଦିଏ କିମ୍ବା ସ୍ନାୟୁ ମଣ୍ଡଳୀରେ ହାନି ଘଟାଇଥାଏ । କେତେକ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ଗର୍ଭପାତ ଘଟିଥାଏ । ଭ୍ରୂଣର ଆକାର ୨୮ ସପ୍ତାହ ମଧ୍ୟରେ ଦ୍ରୁତ ଉନ୍ନତି କରେ ଓ ଗୋଟିଏ ପରେ ଗୋଟିଏ ଶାରୀରିକ ପ୍ରକ୍ରିୟା ଆରମ୍ଭ ହୋଇଥାଏ । ୧୭ ସପ୍ତାହ ବେଳକୁ ହୃତ୍‌ପିଣ୍ଡ କାର୍ଯ୍ୟକ୍ଷମ ହୁଏ । ୨୭-୨୮ ସପ୍ତାହ ବେଳକୁ ଫୁସ୍‌ଫୁସ୍ ଓ ଶ୍ୱାସଯନ୍ତ୍ର ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଯାଏ ଏବଂ ଏଗୁଡ଼ିକ କାର୍ଯ୍ୟକ୍ଷମ ହୁଅନ୍ତି । ୨୮ ସପ୍ତାହ ବେଳକୁ ଭ୍ରୂଣର ଦୈର୍ଘ୍ୟ ୩୫ ସେ:ମି: ଓ ଓଜନ ଏକ କିଲୋଗ୍ରାମ୍ ହୋଇଥାଏ । ଗର୍ଭରେ ଥିବା ୨୮ ସପ୍ତାହର ଶିଶୁ ଜନ୍ମ ହେଲେ ତା ପକ୍ଷରେ ବଞ୍ଚି ରହିବା ସମ୍ଭବ । ଏହାକୁ ବଞ୍ଚିବା ଯୋଗ୍ୟ ଭ୍ରୂଣ କହନ୍ତି । ଏହାପରେ ଶିଶୁର ମାଂସପେଶୀ ଓ ତନ୍ତୁ ସମୂହର ପରିପୁଷ୍ଟି ଅଧିକ ହେଉଥିବାରୁ ଗର୍ଭବତୀ ମାଆ ପାଇଁ ଯଥେଷ୍ଟ ପୁଷ୍ଟିକର ତଥା ଲୌହସାରଯୁକ୍ତ ଖାଦ୍ୟ ପ୍ରୟୋଜନ ।

ସ୍ୱାଭାବିକ ଜନ୍ମ ପ୍ରକ୍ରିୟାରେ ଶିଶୁ ଜନ୍ମ ହେବା ସମୟରେ ପ୍ରଥମେ ମୁଣ୍ଡ ବାହାରକୁ ଆସିଥାଏ । କେତେକ ଶିଶୁଙ୍କର ଗୋଡ଼ ପ୍ରଥମେ ବାହାରିଥାଏ । ନାନା

କାରଣରୁ ଜରାୟୁ ମଧ୍ୟରେ ଭ୍ରୂଣର ଅବସ୍ଥାନ ଅସ୍ୱାଭାବିକ ହୋଇଥାଏ । ଏପରି କ୍ଷେତ୍ରରେ ଡାକ୍ତରଙ୍କ ସାହାଯ୍ୟ ନେବା ଉଚିତ । ଅସ୍ୱାଭାବିକ ଅବସ୍ଥାନର ପରିବର୍ତ୍ତନ ନ ହେଲେ ପ୍ରସବ ପାଇଁ ଯନ୍ତ୍ରର ସାହାଯ୍ୟ ନେବାକୁ ପଡ଼େ । ପୁଣି କେତେକ କ୍ଷେତ୍ରରେ ଶିଶୁର ଶାରୀରିକ ବୃଦ୍ଧି ଅତ୍ୟଧିକ ହୋଇଥିଲେ ପ୍ରସବରେ ବହୁତ କଷ୍ଟ ହୁଏ । ଅତ୍ୟଧିକ ପ୍ରସବ କଷ୍ଟରେ ମାଆ ଓ ଶିଶୁର ବିପଦ ଆଶଙ୍କା କରି ଅସ୍ତ୍ରୋପଚାର କରାଯାଇଥାଏ । ଏହି ଅସ୍ତ୍ରୋପଚାରକୁ ସିଜରିଆନ୍ କୁହାଯାଏ । କଥିତ ଅଛି, ଜୁଲିଅସ୍ ସିଜରଙ୍କୁ ଏହିଭଳି ଅସ୍ତ୍ରୋପଚାର ଦ୍ୱାରା ଭୂମିଷ୍ଠ କରାଯାଇଥିଲା । କେତେକ କ୍ଷେତ୍ରରେ ଉପରୋକ୍ତ କୌଣସି ସମସ୍ୟା ନଥାଇ ଅତି ସହଜରେ ଓ ଶୀଘ୍ର ସନ୍ତାନ ପ୍ରସବ ହୋଇଥାଏ । ପ୍ରସବ ପରେ ପରେ ମାଆର ପେଟରେ ଏକ ପଟି ବାନ୍ଧିବା ପାଇଁ ପରାମର୍ଶ ଦିଆଯାଇଥାଏ । ସୁଖ ପ୍ରସବ ହୋଇଥିଲେ ପ୍ରସବର ତୃତୀୟରୁ ୫ମ ଦିନ ମଧ୍ୟରେ ହାଲୁକା କାମ କରିବା ଉଚିତ । ମାଆର ଶରୀର ତନ୍ତୁଗୁଡ଼ିକ ପ୍ରସବ ପରେ ସ୍ୱାଭାବିକ ଅବସ୍ଥାକୁ ଆସିବା ପାଇଁ ଅନ୍ତତଃ ଦୁଇ ସପ୍ତାହ ଲାଗିପାରେ । ଗର୍ଭବତୀ ଅବସ୍ଥାରେ ମାଆର ସ୍ୱାସ୍ଥ୍ୟର ଯତ୍ନ ଯେପରି ପ୍ରୟୋଜନ, ସନ୍ତାନ ପ୍ରସବ ପରେ ମଧ୍ୟ ସେହିପରି ପ୍ରୟୋଜନ । ଅନେକ ସମୟରେ ପ୍ରସବ ପରେ ମାଆ ଅସୁସ୍ଥ ହୋଇପଡ଼େ । ଏପରି କ୍ଷେତ୍ରରେ ଡାକ୍ତରଙ୍କ ପରାମର୍ଶ କ୍ରମେ ଖାଦ୍ୟ ଓ ଔଷଧର ବ୍ୟବସ୍ଥା କରିବା ଉଚିତ । ସନ୍ତାନ ପ୍ରସବ ପରେ ସ୍ୱାଭାବିକଭାବେ ଦୁର୍ବଳ ହୋଇ ପଡ଼ିଥିବା ଅବସ୍ଥାରେ ମଧ୍ୟ ଶିଶୁକୁ ସ୍ତନ୍ୟପାନ କରାଇବାକୁ ହେବ । ସେଥିପାଇଁ ମାଆ ପାଇଁ ମଧ୍ୟ ଉପଯୁକ୍ତ ପଥ୍ୟ ଓ ପ୍ରୟୋଜନ ସ୍ଥଳେ ଔଷଧ ବ୍ୟବସ୍ଥା ରଖିବା ଉଚିତ ।

ମାତୃ ଗର୍ଭରେ ପ୍ରାୟ ନଅ ମାସ ଅବସ୍ଥାନ କରି ଶିଶୁ ବାହାରକୁ ଆସିଲେ ପରିବେଶ ସହିତ ନିଜକୁ ଖାପ ଖୁଆଇବା ପାଇଁ କେତେକ ଅସୁବିଧାର ସମ୍ମୁଖୀନ ହୁଏ । ଜନ୍ମର ପ୍ରାୟ ୨ ସପ୍ତାହ ପର୍ଯ୍ୟନ୍ତ ନିମ୍ନଲିଖିତ ଅସୁବିଧା ରହେ ।

୧ । **ଉତ୍ତାପ**—ଜରାୟୁ ମଧ୍ୟରେ ୧୦୦° F (୩୮° C) ଉତ୍ତାପରେ ଶିଶୁକୁ ରହିବାକୁ ପଡ଼ୁଥିଲା । ଜନ୍ମପରେ ୬୦° Fରୁ ୮୦° F (୧୬° Cରୁ ୨୭° C) ଉତ୍ତାପ ସହିତ ଅଭ୍ୟସ୍ତ ହେବାକୁ ପଡ଼େ ।

୨ । **ଶ୍ୱାସକ୍ରିୟା**—ଜନ୍ମ ପୂର୍ବବର୍ତ୍ତୀ ସମୟରେ ଜରାୟୁ ସହିତ ଶିଶୁ ଦେହରେ ଲାଗିଥିବା ନାଭି ରଜ୍ଜୁ ସାହାଯ୍ୟରେ ସେ ଶ୍ୱାସକ୍ରିୟା କରିଥାଏ । ଜନ୍ମ ପରେ

ଏହି ରକ୍ତର ଛେଦନ ଫଳରେ ଶିଶୁକୁ ନିଜ ପ୍ରଚେଷ୍ଟାରେ ଅକ୍‌ସିଜେନ୍ ନେବାକୁ ପଡ଼େ । ଜନ୍ମ ସମୟର 'କୁଆଁ କୁଆଁ କାନ୍ଦ' ମାଧ୍ୟମରେ ପ୍ରାକୃତିକ ଉପାୟରେ ଫୁସ୍‌ଫୁସ୍‌କୁ ବାୟୁ ପୂର୍ଣ୍ଣ କରି ଶିଶୁ ଶ୍ୱାସକ୍ରିୟା ଆରମ୍ଭ କରେ । କେତେକ କ୍ଷେତ୍ରରେ ଶିଶୁ ଜନ୍ମ ପରେ କାନ୍ଦିପାରେ ନାହିଁ । ଏପରି କ୍ଷେତ୍ରରେ କୃତ୍ରିମ ପଦ୍ଧତିରେ ତାକୁ କନ୍ଦାଇବାକୁ ପଡ଼େ । ଏଥିରେ ମଧ୍ୟ ଶିଶୁ ନ କାନ୍ଦିଲେ ତାର ଶ୍ୱାସକ୍ରିୟା ସ୍ୱାଭାବିକ କରିବା ପାଇଁ ଅକ୍‌ସିଜେନ୍ ଦେବାକୁ ପଡ଼େ । ଏପରି ସ୍ଥଳେ ଘରେ ଜନ୍ମ ହେଉଥିବା ଶିଶୁର ଜୀବନ ପ୍ରତି ବିପଦ ଦେଖାଦିଏ ।

**୩ । ଖାଦ୍ୟ ଗ୍ରହଣ** – ଜନ୍ମ ପୂର୍ବରୁ ନାଭିରଜ୍ଜୁ ଦ୍ୱାରା ମାଆର ରକ୍ତରୁ ଶିଶୁ ଖାଦ୍ୟ ସଂଗ୍ରହ କରିଥାଏ । ନାଭିରଜ୍ଜୁ କଟା ହୋଇଗଲା ପରେ ଶିଶୁ ନିଜେ ଖାଦ୍ୟ ଖାଇବା ପ୍ରୟୋଜନ ହୁଏ । ମାତୃସ୍ତନ ଚୁମୁମି କ୍ଷୀର ଟାଣିବା ପ୍ରକ୍ରିୟାର ସେ ଅଭ୍ୟାସ କରେ ।

ବଞ୍ଚିରହିବା ପାଇଁ ଶିଶୁକୁ ପରିଷ୍କୃତ ସହିତ ଖାପ ଖୁଆଇବାକୁ ପଡ଼େ । ଜନ୍ମର ପ୍ରଥମ ଦୁଇ ଦିନ, ବିଶେଷ ଭାବେ ଜନ୍ମର ୧ମ ଦିନଟିରେ ଉକ୍ତ ପରିବେଶ ଓ ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇବାରେ ଅକ୍ଷମତା ହେତୁ ଅଧିକ ହାରରେ ଶିଶୁ ମୃତ୍ୟୁ ଘଟିଥାଏ । ତେଣୁ ନୂତନ ଅବସ୍ଥା ସହିତ ଶିଶୁ ନିଜକୁ ଖାପ ଖୁଆଇବା ଉପରେ ମୃତ୍ୟୁ ହାର ନିର୍ଭର କରେ ।

ଅପରିପକ୍ୱ ଶିଶୁ ପକ୍ଷରେ ଜନ୍ମ ପରେ ଶ୍ୱାସକ୍ରିୟା ଓ ଖାଦ୍ୟ ଗ୍ରହଣ ସମ୍ଭବ ହୁଏ ନାହିଁ । ଏପରି ଶିଶୁର ବିଶେଷ ଯତ୍ନ ଓ ଚିକିତ୍ସା ପ୍ରୟୋଜନ । ସମ୍ପୂର୍ଣ୍ଣ ପରିପୁଷ୍ଟ ନବଜାତ ଶିଶୁର ଓଜନ ସାଧାରଣତଃ ୫·୪ କିଲୋଗ୍ରାମ୍‌ରୁ ୭·୪ କିଲୋଗ୍ରାମ୍ ଓ ଏହାର ଦୈର୍ଘ୍ୟ ପ୍ରାୟ ୫୦ ସେ:ମି: ହୋଇଥାଏ । ମୁଣ୍ଡଟି ଶରୀର ତୁଳନାରେ ବଡ଼ଥାଏ ଓ ଏହାର ଓଜନ ପ୍ରାୟ ଶରୀରର ଓଜନର ଏକ ଚତୁର୍ଥାଂଶ । କ୍ରମେ ଶିଶୁ ବଢ଼ିବା ସଙ୍ଗେ ସଙ୍ଗେ ତାର ଅବୟବ ଗୁଡ଼ିକ ସ୍ୱାଭାବିକ ଆକାର ନିଅନ୍ତି ।

ନବଜାତ ଶିଶୁ ପ୍ରାଣୀ ଜଗତରେ ସବୁଠାରୁ ଅସହାୟ ଓ ଜୀବନ ଧାରଣ ପାଇଁ ସମ୍ପୂର୍ଣ୍ଣ ଭାବେ ମାଆ ଉପରେ ନିର୍ଭର କରେ । ଶିଶୁ କେତେଗୁଡ଼ିଏ ପ୍ରତିକ୍ଷେପ କ୍ରିୟାର (Reflex action)ର ଅଧିକାରୀ ହୋଇ ଜନ୍ମ ହୋଇଥାଏ । ସେଥିମଧ୍ୟରୁ ଶିହରଣ ପ୍ରତିକ୍ଷେପ (Moro Reflex) ଓ ଚୋଷଣ ପ୍ରତିକ୍ଷେପ (Sucking Reflex) ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଜୋର ଶବ୍ଦ ହେଲେ ବା ପାଖରେ ତାଳି ମାରିଲେ ସେ ଚମକି ପଡ଼େ, ହାତ ଗୋଡ଼ ପ୍ରସାରିତ କରି ସଙ୍କୁଚିତ କରିନିଏ । ଏହାକୁ

ଶିହରଣ ପ୍ରତିକ୍ଷେପ କହନ୍ତି । ତା ଓଠର ଗୋଟିଏ ଦିଗରେ ଆଙ୍ଗୁଳି ରଖିଲେ ସେ ସେଦିଗକୁ ମୁହଁ ବୁଲାଇ ଆଙ୍ଗୁଳି ଚୁଚୁମିବା ଆରମ୍ଭ କରିଦିଏ । ଏହାକୁ ଚୋଷଣ ପ୍ରତିକ୍ଷେପ କହନ୍ତି କଷ୍ଟ ପ୍ରସବ ଫଳରେ ମସ୍ତିଷ୍କରେ ରକ୍ତସ୍ରାବ ହେଲେ ବା ଜନ୍ମପରେ ଅଧିକ ସମୟ ପର୍ଯ୍ୟନ୍ତ ନିଃଶ୍ୱାସ ନେଇ ନପାରିଲେ ତା'ର ସ୍ନାୟୁ ମଣ୍ଡଳୀ ଓ ମସ୍ତିଷ୍କ ଦୁର୍ବଳ ହୋଇଯାଏ । ଫଳରେ ପ୍ରତିକ୍ଷେପ କ୍ରିୟା ଦୁର୍ବଳ ହୋଇଯାଏ । ଜନ୍ମର ୩ୟ ମାସ ପର୍ଯ୍ୟନ୍ତ ଶିହରଣ ପ୍ରତିକ୍ଷେପ ଓ ୪ର୍ଥ ମାସ ପର୍ଯ୍ୟନ୍ତ ଚୋଷଣ ପ୍ରତିକ୍ଷେପ କ୍ରିୟା ଦେଖାଯାଏ । କ୍ରମେ ଏହି ପ୍ରକ୍ରିୟାଗୁଡ଼ିକ ଯଥାଯଥ ଭାବେ କାର୍ଯ୍ୟକ୍ଷମ ହୋଇଥାଏ ।

ଜନ୍ମର ପ୍ରଥମ ୫ ବର୍ଷ ଶିଶୁର ଶାରୀରିକ ଓ ମାନସିକ ବିକାଶ ପାଇଁ ଗୁରୁତ୍ୱପୂର୍ଣ୍ଣ । ସ୍ୱାଭାବିକ ରୋଗ ନିରୋଧକ ଶକ୍ତିର ଅଭାବ ହେତୁ ସେ ନାନା ପ୍ରକାର ରୋଗ ଭୋଗେ । ଏହି ସମୟରେ ପରିବେଶ ତା ଉପରେ ବିଶେଷ ପ୍ରଭାବ ପକାଇଥାଏ । ସେ ଅସହାୟ ଅବସ୍ଥା ତ୍ୟାଗ କରି କର୍ମଚଞ୍ଚଳ ହୁଏ । କ୍ରମେ ତାର ଶରୀରର ଓଜନ, ଉଚ୍ଚତା ଓ ଗ୍ରୀବାର ଓସାର ବଢ଼େ, ଦାନ୍ତ ଉଠେ । ଭାବପ୍ରକାଶ ପାଇଁ ଅଙ୍ଗଭଙ୍ଗୀ ଦ୍ୱାରା ଓ କଥା କହି ଶିଖିବା ପରେ, ଭାଷା ମାଧ୍ୟମରେ ନିଜର ପ୍ରୟୋଜନ ଜଣାଇ ଶିଖେ । କଥା କହି ଶିଖାଇବା ପାଇଁ ତା ସହିତ ସବୁବେଳେ କଥା କହିବା ପ୍ରୟୋଜନ । କ୍ରମେ ସେ ଅନ୍ୟମାନଙ୍କ କଥା ବୁଝିପାରେ ଓ ନିଜେ କଥା କହିପାରେ । ଶିଶୁ ପ୍ରଥମେ ନିଜ ମାଆକୁ ଓ ପରେ ପରିବାରର ଅନ୍ୟମାନଙ୍କୁ ଚିହ୍ନି ଶିଖେ । ଅଢ଼େଇ ବର୍ଷ ବୟସର ପିଲା 'ମୁଁ'ର ଅର୍ଥ ବୁଝିପାରେ, ନିଜ ନାଁ କହିପାରେ ଓ ୩ ବର୍ଷ ବୟସରେ ନିଜେ ପୁଅ କି ଝିଅ ଜାଣିପାରେ । ତିନି ପର୍ଯ୍ୟନ୍ତ ସଂଖ୍ୟା ଗଣିପାରେ । ୪ ବର୍ଷ ବେଳକୁ ଗପ ଶୁଣି ମନେରଖେ ଓ କହିପାରେ । ୫ ବର୍ଷ ବେଳକୁ ୪ଟି ରଙ୍ଗ ମନେରଖି ଚିହ୍ନାଇପାରେ । ଏହିପରି କ୍ରମାନ୍ୱୟରେ ଶିଶୁର ବୋଧଶକ୍ତିର ବିକାଶ ଘଟେ । ଯେଉଁ ଶିଶୁମାନଙ୍କର ଉପରୋକ୍ତ ପ୍ରକ୍ରିୟାଗୁଡ଼ିକ ବିଳମ୍ବରେ ଆରମ୍ଭ ହୁଏ ସେମାନଙ୍କର ମାନସିକ ବିକାଶ ବାଧାପ୍ରାପ୍ତ ହୋଇଛି ବୋଲି ବୁଝିବାକୁ ହେବ ।

ମାଆ କ୍ଷୀର ଶିଶୁର ସର୍ବୋତ୍ତମ ଖାଦ୍ୟ । ସେଥିପାଇଁ ଗର୍ଭାବସ୍ଥାର ଶେଷ ତିନିମାସ ମାଆ ନିଜ ସ୍ତନର ଯତ୍ନ ନେବା ବିଧେୟ । ପ୍ରତିଦିନ ସ୍ତନକୁ ଉଷୁମ ଜଳରେ ଧୋଇ ପରିଷ୍କାର କରି ଥରେ ବା ଦୁଇଥର ସ୍ତନାଗ୍ରକୁ ଟାଣିବା ଉଚିତ । ଏହାଦ୍ୱାରା ସ୍ତନାଗ୍ର ଉନ୍ନତ ହୁଏ ଓ ଶିଶୁ ଚୁଚୁମି ଖାଇବାରେ ଅସୁବିଧା ହୁଏ ନାହିଁ । ଗର୍ଭାବସ୍ଥାରେ ମହିଳାମାନେ ଢିଲା ବ୍ରେସିଅର ପିନ୍ଧିବା ଉଚିତ ।

ମାତୃ ସ୍ତନରେ ବହୁ ସଂଖ୍ୟକ ଦୁଗ୍ଧ ପ୍ରସ୍ତୁତକାରୀ କୋଟରିକା (Alveoli) ଓ ଦୁଗ୍ଧ ନଳୀ (Milkduetules) ଥାଏ । ଗର୍ଭାବସ୍ଥାରେ କୋଟରିକା ଓ

ତନ୍ତୁଗୁଡ଼ିକର ବୃଦ୍ଧି ଘଟିବା ଫଳରେ ସ୍ତନ୍ୟଗ୍ରନ୍ଥି ଉନ୍ନତ ହୋଇଥାଏ ଓ ଦୁଗ୍ଧ ସ୍ରବିବା ପାଇଁ ଉପଯୁକ୍ତ ଅବସ୍ଥାରେ ପହଞ୍ଚିଥାଏ । ଶିଶୁ ସ୍ତନ୍ୟଗ୍ରନ୍ଥି ଚୁଚୁମିବା ମାତ୍ରେ ପ୍ରତିକ୍ଷେପ (Prolectation Reflex) ଦ୍ୱାରା ଦୁଗ୍ଧ ନିସୃତ ହୁଏ । ସ୍ତନ୍ୟ ଦାନ ଦ୍ୱାରା ମାଆ ମନରେ ସନ୍ତୋଷ ଆସିଲେ କ୍ଷୀରର ପରିମାଣ ବଢ଼େ । ପୁଣି ଅପରପକ୍ଷେ, ଶିଶୁ ପାଇଁ ଯଥେଷ୍ଟ କ୍ଷୀର ହେଉ ନାହିଁ ବୋଲି ଭାବିଲେ କ୍ଷୀର ସ୍ରୁତ କମିଯାଇଥାଏ । ଶିଶୁକୁ କୋଳରେ ଧରି ଓ ସିଧା ବସି ସ୍ତନ୍ୟ ପାନ କରାଇବା ଉଚିତ । ଗୋଟିଏ ସ୍ତନରୁ ଅଳ୍ପ ସମୟ କ୍ଷୀର ଖୁଆଇ ଅନ୍ୟ ସ୍ତନରୁ ଖୁଆଇବା ଉଚିତ । ଏହାଦ୍ୱାରା ସ୍ତନରେ କ୍ଷତ ହେବା ଆଶଙ୍କା ରହେ ନାହିଁ । ସ୍ତନ୍ୟଦାତ୍ରୀ ମାଆର ମାନସିକ ଦୁଶ୍ଚିନ୍ତା, କ୍ଳାନ୍ତି ଓ ସ୍ତନାଗ୍ରରେ କ୍ଷତ ଜନିତ ଯନ୍ତ୍ରଣା ହେଲେ ପ୍ରତିକ୍ଷେପ କ୍ରିୟାରେ ବାଧା ସୃଷ୍ଟି କରେ ଓ ଦୁଗ୍ଧ ସ୍ରବିବା କମିଯାଏ । ଯେପରି ସ୍ତନ୍ୟଦାତ୍ରୀ ମାଆ ପାଇଁ ଉପଯୁକ୍ତ ପୁଷ୍ଟିକର ଖାଦ୍ୟର ପ୍ରୟୋଜନ ସେହିପରି ଗର୍ଭବତୀ ମାଆ ପାଇଁ ମଧ୍ୟ ପୁଷ୍ଟିର ପ୍ରୟୋଜନ ଥାଏ ।

ଯଦିଓ ଗର୍ଭାବସ୍ଥା ଓ ଶିଶୁକୁ କ୍ଷୀର ଖୁଆଇବା ସାଧାରଣ ଶରୀରତତ୍ତ୍ୱ ପ୍ରକ୍ରିୟା, ଏହି ଦୁଇଟି ଅବସ୍ଥାରେ ମାଆ ପାଇଁ ଖାଦ୍ୟରେ ପୁଷ୍ଟିର ପରିମାଣ ଯଥେଷ୍ଟ ଥିବା ଆବଶ୍ୟକ । ଗର୍ଭାବସ୍ଥାର ପ୍ରଥମ ଭାଗରେ କ୍ଷୁଧାହୀନତା ଓ ଘନ ଘନ ବାନ୍ତି ହେବା ଫଳରେ ମାଆର ଖାଦ୍ୟର ପରିମାଣ କମିଯାଏ । ଅଧିକନ୍ତୁ ଭ୍ରୁଣର ଅଭିବୃଦ୍ଧି ପାଇଁ ଅତିରିକ୍ତ ପୁଷ୍ଟିର ପ୍ରୟୋଜନ ହୁଏ । ସେହିପରି ସ୍ତନ୍ୟଦାତ୍ରୀ ମାଆ ଶିଶୁକୁ କ୍ଷୀର ଖୁଆଇବା ଫଳରେ ତାହାର ଶରୀର ପାଇଁ ଅତିରିକ୍ତ ପୁଷ୍ଟି ଆବଶ୍ୟକ ହୁଏ । ସେହି ସମୟରେ ପୁଷ୍ଟିର ଆବଶ୍ୟକତା ପୂରଣ ପାଇଁ ସମସ୍ତ ପ୍ରକାର ଖାଦ୍ୟପ୍ରାଣ, ଖାଦ୍ୟସାର ଓ ଧାତବସାର ନିର୍ଦ୍ଦିଷ୍ଟ ଅନୁପାତରେ ଖାଦ୍ୟରେ ରହିବା ଉଚିତ । ଉକ୍ତ ଅନୁପାତକୁ ଦୃଷ୍ଟିରେ ରଖି ଯେଉଁ ଖାଦ୍ୟ ଦିଆଯାଏ ତାହାକୁ ସୁଷମ ଖାଦ୍ୟ କହନ୍ତି । ଆମ ଦେଶରେ ଅର୍ଥନୀତି ଦିଗରୁ ତିନୋଟି ସ୍ତର ରହିଛି, ଯଥା—(୧) ଅଧିକ ଉପାର୍ଜ୍ଜନ କ୍ଷମ, (୨) ମଧ୍ୟମ ଉପାର୍ଜ୍ଜନ କ୍ଷମ ଓ (୩) ସ୍ୱଳ୍ପ ଉପାର୍ଜ୍ଜନ କ୍ଷମ । ପୁଣି କେତେକ ମାଆ ଆମିଷ ଓ କେତେକ ମାଆ ନିରାମିଷ ଖାଦ୍ୟ ଖାଇଥାନ୍ତି । ଏହି ବିଷୟ ପ୍ରତି ଧ୍ୟାନ ଦେଇ ସ୍ୱତନ୍ତ୍ର ସୁଷମ ଖାଦ୍ୟ ତାଲିକା ପ୍ରସ୍ତୁତ କରାଯାଇଅଛି । ସେଥିର ନମୁନା ନିମ୍ନରେ ପ୍ରଦତ୍ତ ହେଲା ।

କେତେକ ମହିଳା ଘରେ ରହନ୍ତି, କେତେକ ଚାକିରି ବା ଅନ୍ୟାନ୍ୟ କାର୍ଯ୍ୟ କରି ଜୀବିକାର୍ଜ୍ଜନ କରିଥାନ୍ତି । କର୍ମଜୀବୀ ମହିଳାମାନଙ୍କ ମଧ୍ୟରେ କେତେକ ମଧ୍ୟମ ଧରଣର ଓ କେତେକ କଠିନ ପରିଶ୍ରମ କରିଥାନ୍ତି । ଦତ୍ତ ସୁଷମ ଖାଦ୍ୟ ତାଲିକା ପ୍ରସ୍ତୁତ ସମୟରେ ସେଥିପ୍ରତି ମଧ୍ୟ ଦୃଷ୍ଟି ଦିଆଯାଇଅଛି ।

୧ । ସ୍ୱଳ୍ପ ଉପାର୍ଜ୍ଜନକ୍ଷମ ପରିବାରର ମାଆମାନଙ୍କ ପାଇଁ (ଉଭୟ ଆମିଷ ଓ ନିରାମିଷ)

( ସ୍ୱାଭାବିକ ମହିଳା )

| ଖାଦ୍ୟ ଦ୍ରବ୍ୟ (ଗ୍ରାମ୍ ହିସାବରେ | ଘରେ ରହୁଥିବା | | ମଧ୍ୟମ ଧରଣର କାର୍ଯ୍ୟ କରୁଥିବା | | କଠିନ ପରିଶ୍ରମ କରୁଥିବା | | ଅତିରିକ୍ତ ଚାହିଦା | |
|---|---|---|---|---|---|---|---|---|
| | ନିରାମିଷ | ଆମିଷ | ନିରାମିଷ | ଆମିଷ | ନିରାମିଷ | ଆମିଷ | ଗର୍ଭାବସ୍ଥାରେ | କ୍ଷୀର ଖୁଆଇବାବେଳେ |
| ଶସ୍ୟ ପ୍ରସ୍ତୁତ ଖାଦ୍ୟ | ୩୦୦ | ୩୦୦ | ୩୫୦ | ୩୫୦ | ୪୭୫ | ୪୭୫ | ୫୦ | ୧୦୦ |
| ଡାଲି ଜାତୀୟ ଖାଦ୍ୟ | ୭୦ | ୪୫ | ୭୦ | ୫୫ | ୭୦ | ୫୫ | — | ୧୦ |
| ସବୁଜପତ୍ରଯୁକ୍ତ ପରିବା | ୧୨୫ | ୧୨୫ | ୧୨୫ | ୧୨୫ | ୧୨୫ | ୧୨୫ | ୨୫ | ୨୫ |
| ଅନ୍ୟାନ୍ୟ ପରିବା | ୭୫ | ୭୫ | ୭୫ | ୭୫ | ୧୦୦ | ୧୦୦ | — | — |
| ମୂଳ ବା କନ୍ଦା ଓ ଆଳୁ ଇତ୍ୟାଦି | ୫୦ | ୫୦ | ୭୫ | ୭୫ | ୧୦୦ | ୧୦୦ | — | — |
| ବିଭିନ୍ନ ଫଳ | ୩୦ | ୩୦ | ୩୦ | ୩୦ | ୩୦ | ୩୦ | — | — |
| ଚର୍ବି ଓ ତେଲ ଜାତୀୟ ଖାଦ୍ୟ | ୩୦ | ୩୫ | ୩୫ | ୪୦ | ୪୦ | ୪୫ | — | ୧୫ |
| ଶର୍କରା ଓ ଗୁଡ଼ | ୩୦ | ୩୦ | ୩୦ | ୩୦ | ୪୦ | ୪୦ | ୧୦ | ୨୦ |
| ମାଛ ଓ ମାଂସ | — | ୩୦ | — | ୩୦ | — | ୩୦ | — | — |
| ଅଣ୍ଡା | — | ୩୦ | — | ୩୦ | — | ୩୦ | — | — |
| ଚିନାବାଦାମ | — | — | — | — | ୪୦ | ୪୦ | — | — |

ଚିନାବାଦାମ ପରିବର୍ତ୍ତେ ଅତିରିକ୍ତ ୨୫ ଗ୍ରାମ୍ ଚର୍ବି ଓ ତେଲଜାତୀୟ ଖାଦ୍ୟ ଏହି ତାଲିକାରେ ଅନ୍ତର୍ଭୁକ୍ତ କରାଯାଇପାରେ ।

ଉପରୋକ୍ତ ଖାଦ୍ୟ ତାଲିକାରୁ ଲକ୍ଷ୍ୟ କରାଯାଏ, ଏଥିରେ ଅଧିକ ମୂଲ୍ୟର ଖାଦ୍ୟ; ଯଥା—ମାଛ, ମାଂସ ଓ ଅଣ୍ଡା ସର୍ବନିମ୍ନ ପରିମାଣ ଏବଂ ଦ୍ୱିବୀଜ-ପତ୍ରୀ ଓ ସବୁଜପତ୍ରଯୁକ୍ତ ପନିପରିବା ଅଧିକ ଅନ୍ତର୍ଭୁକ୍ତ କରାଯାଇଅଛି ।

୨ । ମଧ୍ୟମ ଉପାର୍ଜ୍ଜନକ୍ଷମ ପରିବାରର ମାଆମାନଙ୍କ ପାଇଁ (ଉଭୟ ଆମିଷ ଓ ନିରାମିଷ)

( ସାଧାରଣ ମହିଳା )

| ଖାଦ୍ୟ ଦ୍ରବ୍ୟ | ଘରେ ରହୁଥିବା | | ମଧ୍ୟମ ଧରଣର କାର୍ଯ୍ୟ କରୁଥିବା | | କଠିନ ପରିଶ୍ରମ କରୁଥିବା | | ଅତିରିକ୍ତ ଚାହିଦା | | | |
|---|---|---|---|---|---|---|---|---|---|---|
| | | | | | | | ଗର୍ଭବତୀ ମାଆ ପାଇଁ | | କ୍ଷୀର ଖୁଆଉଥିବା ମାଆ ପାଇଁ | |
| (ଗ୍ରାମ୍ ହିସାବରେ) | ନିରାମିଷ | ଆମିଷ | ନିରାମିଷ | ଆମିଷ | ନିରାମିଷ | ଆମିଷ | ନିରାମିଷ | ଆମିଷ | ନିରାମିଷ | ଆମିଷ |
| ଶସ୍ୟରୁ ପ୍ରସ୍ତୁତ ଖାଦ୍ୟ | ୨୭୦ | ୨୫୦ | ୩୧୦ | ୩୦୦ | ୪୪୦ | ୪୨୫ | — | — | ୧୧୦ | ୧୦୦ |
| ଡାଲି ଜାତୀୟ ଖାଦ୍ୟ | ୭୦ | ୫୦ | ୭୦ | ୫୦ | ୭୦ | ୫୦ | ୨୦ | — | ୪୦ | — |
| ସବୁଜପତ୍ରଯୁକ୍ତ ପନିପରିବା | ୧୦୦ | ୧୦୦ | ୧୦୦ | ୧୦୦ | ୧୦୦ | ୧୦୦ | — | — | — | — |
| ଅନ୍ୟାନ୍ୟ ପନିପରିବା | ୭୫ | ୬୫ | ୬୫ | ୬୫ | ୧୦୦ | ୧୦୦ | — | — | — | — |
| ମୂଳ ବା କନ୍ଦା ଓ ଓଳୁଅ ଇତ୍ୟାଦି | ୫୦ | ୫୦ | ୬୫ | ୬୫ | ୧୦୦ | ୧୦୦ | — | — | — | — |
| ବିଭିନ୍ନ ଫଳ | ୭୦ | ୭୦ | ୭୦ | ୭୦ | ୭୦ | ୭୦ | ୫୦ | ୫୦ | ୫୦ | ୫୦ |
| କ୍ଷୀର | ୪୦୦ | ୨୫୦ | ୪୦୦ | ୨୫୦ | ୪୦୦ | ୨୫୦ | ୪୦୦ | ୨୦୦ | ୭୦୦ | ୩୦୦ |
| ଚର୍ବି ଓ ତେଲ ଜାତୀୟ ଖାଦ୍ୟ | ୩୦ | ୩୫ | ୩୫ | ୪୦ | ୪୦ | ୪୫ | — | — | ୨୦ | ୨୦ |
| ଶର୍କରା ଓ ଗୁଡ଼ | ୩୦ | ୩୦ | ୩୦ | ୩୦ | ୪୦ | ୪୦ | — | — | ୨୦ | ୨୦ |
| ମାଛ ଓ ମାଂସ | — | ୭୦ | — | ୭୦ | — | ୭୦ | — | ୨୫ | — | ୪୦ |
| ଅଣ୍ଡା | — | ୩୦ | — | ୩୦ | — | ୩୦ | — | — | — | — |
| ଚନାବାଦାମ | ୪୦ | ୪୦ | ୪୦ | ୪୦ | ୪୦ | ୪୦ | — | — | — | — |

## ଶିଶୁ ପାଳନ

ସଦ୍ୟଜାତ ଶିଶୁର ଉପଯୁକ୍ତ ଯତ୍ନନେବା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଏହି ଅସହାୟ ମାନବ ଶିଶୁ ନିଜର କୌଣସି ଅସୁବିଧା ବୁଝାଇପାରେ ନାହିଁ । ତେଣୁ ପ୍ରସୂତି ମାଆକୁ ଶିଶୁର କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ରଖି ଅଭିଜ୍ଞତା ଅର୍ଜନ କରିବାକୁ ପଡ଼ିଥାଏ । ମାଆ ସହିତ ପରିବାରର ଅନ୍ୟ ସଦସ୍ୟମାନେ ମଧ୍ୟ ଶିଶୁ ପାଳନରେ ସମ୍ପୃକ୍ତ ହେବା ବାଞ୍ଛନୀୟ ।

ଜନ୍ମର ୫ ବର୍ଷ ମଧ୍ୟରେ ଶିଶୁର ଭବିଷ୍ୟତ ବ୍ୟକ୍ତିତ୍ୱ ରୂପାୟିତ ହୁଏ ଓ ଏହି ମୂଳ ଢାଞ୍ଚାରେ କ୍ୱଚିତ୍ ପରିବର୍ତ୍ତନ ଘଟେ । ତେଣୁ ଏହି ସମୟଟି ତା ଜୀବନର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସମୟ । ପିତା ମାତା ଏହି ସମୟରେ ଅତ୍ୟନ୍ତ ସାବଧାନତାର ସହିତ ଶିଶୁର ଲାଳନ ପାଳନ କରିବା ବାଞ୍ଛନୀୟ । ଏହି ସମୟର ଅଭିଜ୍ଞତା ତା ଜୀବନର ନିଷ୍ପତ୍ତିମୂଳକ ଭାବରେ କାର୍ଯ୍ୟ କରେ । ତେଣୁ ସେଥିପ୍ରତି ଦୃଷ୍ଟି ଦେଇ ଯେପରି କୌଣସି ପ୍ରତିକୂଳ ପରିସ୍ଥିତିର ପ୍ରଭାବ ତା ଉପରେ ନ ପଡ଼େ । ସେଥିପ୍ରତି ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ବାଞ୍ଛନୀୟ ।

ଶିଶୁର ଜନ୍ମ ପରେ ତାକୁ ସ୍ନାନ କରାଇବା ଜରୁରୀ ନୁହେଁ । ପରିଷ୍କାର କପଡ଼ା ବା ତୁଳାରେ ତା'ର ଶରୀରକୁ ପରିଷ୍କାର କଲେ ଚଳିବ । ଏଥିପାଇଁ ବିଶୋଧିତ ତୁଳା ବା ଗଜ୍ କନା ବ୍ୟବହାର କରିବା ଆବଶ୍ୟକ । ଶିଶୁର ଆଖି ମଧ୍ୟ ଏପରିଭାବେ ସଫା କରାଯାଏ । ନାଭି ଶୁଖି ଖସି ପଡ଼ିବା ପରେ ଶିଶୁକୁ ସ୍ନାନ କରାଯାଇ ପାରେ । ନାଭି ଶୁଖିବା ପୂର୍ବରୁ ଗାଧୋଇ ଦେଲେ ନାଭିରେ ଯେପରି ପାଣି ନ ଲାଗେ ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଦୈବାତ୍ ନାଭିରେ ପାଣି ଲାଗିଗଲେ ନାଭିଟି ସ୍ପିରିଟ ଦେଇ ପୋଛିଦେବା ଉଚିତ । ଗାଧୋଇବା ପରେ ନରମ ତଉଲିଆରେ ଶିଶୁର ଦେହ ଭଲ ରୂପେ ପୋଛି ଦେବ । ବେକର ଭାଙ୍ଗ, କାଖ ତଳ ଇତ୍ୟାଦି ସ୍ଥାନଗୁଡ଼ିକ ଭଲ ରୂପେ ପୋଛିବ ।

ଶିଶୁକୁ ପ୍ରଥମ ଥର ଗାଧୋଇ ଦେବା ବେଳେ ସାମାନ୍ୟ ଉଷୁମ ଜଳ ଆବଶ୍ୟକ । ଏହା ପରେ ପ୍ରତ୍ୟେକ ଦିନର ସ୍ନାନ ଋତୁ ଅନୁସାରେ ଥଣ୍ଡା ବା ଉଷୁମ ଜଳରେ କରାଯାଇପାରେ । ଗାଧୋଇବା ପୂର୍ବରୁ ଶିଶୁ ଦେହରେ ଭଲ ଭାବେ ତେଲ ମାଲିସ୍ କରିବା ଆମ ଦେଶର ପ୍ରଚଳିତ ରୀତି । ହଳଦୀ ଓ ତେଲ ମାଲିସ୍ କରି ମଧ୍ୟ ଗାଧୋଇ ଦିଆଯାଇଥାଏ । ମାଆ ଗୋଡ଼ ଲମ୍ବାଇ ଶିଶୁକୁ ନିଜ

ଗୋଡ଼ ଉପରେ ଶୁଆଇ ହାତର ପାପୁଲିରେ ସାବୁନ ଫେଣ କରି ତା ଦେହରେ ଲଗାଇ ଗାଧୋଇ ଦେବା ଉଚିତ । ଶିଶୁର ସ୍ନାନ ଉପଯୋଗୀ ସାବୁନ ବ୍ୟବହାର କରିବା ଉଚିତ । ଶିଶୁକୁ ଗାଧୋଇ ଦେବା ସମୟରେ ଲକ୍ଷ୍ୟ ରଖିବାକୁ ପଡ଼ିବ ଯେପରି ନାକ ଓ କାନରେ ପାଣି ପଶି ନଯାଏ । ଶିଶୁକୁ ପୋଛି ଦେଇ ମୁଣ୍ଡ କୁଣ୍ଡାଇ ଦେବ ଓ ପାଉଡ଼ର ଲଗାଇ ଦେବ । ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ ଶିଶୁକୁ ସ୍ନାନ କରାଇବା ଉଚିତ । ସକାଳ ଦଶଟା ପୂର୍ବରୁ ଶିଶୁ ସ୍ନାନ କରିବା ଭଲ ।

ଶିଶୁକୁ ଢିଲା, ହାଲୁକା ଓ ପରିଚ୍ଛନ୍ନ ପୋଷାକ ପିନ୍ଧାଇବା ଉଚିତ । ଏହା ଋତୁ ଅନୁଯାୟୀ କାର୍ପାସ, ସିଲ୍କ ବା ପଶମ ନିର୍ମିତ ହେବା ପ୍ରୟୋଜନ । ଏକା ସଙ୍ଗେ ଗୁଡ଼ାଏ ପୋଷାକ ପିନ୍ଧାଇବା ଉଚିତ ନୁହେଁ । ଶିଶୁର ପୋଷାକ ଏପରି ହେବା ଉଚିତ ଯାହା ସହଜରେ ବଦଳା ଯାଇପାରିବ ଓ ଶାରୀରିକ ଅଭିବୃଦ୍ଧି ପ୍ରକ୍ରିୟାରେ କୌଣସି ବାଧା ସୃଷ୍ଟି କରିବ ନାହିଁ । ବାହାରକୁ ନେବା ସମୟରେ ଶରୀର ଢାଙ୍କି ରଖିବା ପାଇଁ ପର୍ଯ୍ୟାପ୍ତ ପୋଷାକ ପିନ୍ଧାଇବା ଉଚିତ । କେତେକ ପରିବାରର ରୀତି ଅନୁସାରେ କୌଣସି ଦେବ ସ୍ଥାନରେ ଶିଶୁର କେଶ ମୁଣ୍ଡନ ହୋଇଥାଏ । ମୁଣ୍ଡରେ କେଶ ନ ଥିଲେ ପବନ ବାଜିଲେ ଥଣ୍ଡା ଧରେ । ସେଥିପାଇଁ ମୁଣ୍ଡରେ ଟୋପି ପିନ୍ଧାଇବା ପ୍ରୟୋଜନ । ଶୀତ ଋତୁରେ ପଶମ ନିର୍ମିତ ଟୋପି ପିନ୍ଧାଇବା ଉଚିତ । ରଙ୍ଗ ଛାଡ଼ି ଯାଉଥିବା କୌଣସି ପୋଷାକ ଚର୍ମ ସହିତ ଲଗି ରହିଲେ ଏହା ଚର୍ମ ପାଇଁ କ୍ଷତିକାରକ ।

ଶିଶୁ ତରଳ ଖାଦ୍ୟ ଖାଉଥିବାରୁ ଘନ ଘନ ପରିସ୍ରା କରେ । ତେଣୁ ଲଙ୍ଗୋଟି ଘନ ଘନ ବଦଳାଇବା ଦରକାର ପଡ଼େ । ଲଙ୍ଗୋଟି ବଦଳାଇବା ସଙ୍ଗେ ସଙ୍ଗେ ପରିସ୍ରା ଲାଗିଥିବା ସ୍ଥାନକୁ ଓଦାକନାରେ ଭଲରେ ପୋଛି ପାଉଡ଼ର ଲଗାଇ ଦେଲେ ଲଙ୍ଗୋଟି ଘାଆ (Diaper rash) ହୁଏ ନାହିଁ । ଶିଶୁ ମଳ ତ୍ୟାଗ କଲେ ମଧ୍ୟ ଉପରୋକ୍ତ ଉପାୟରେ ତାହାକୁ ପରିଷ୍କାର କରିବାକୁ ହେବ ।

ନବଜାତ ଶିଶୁର ସ୍ୱାସ୍ଥ୍ୟ ଉପରେ ତାହାର ଶାରୀରିକ ଅଭିବୃଦ୍ଧି ନିର୍ଭର କରେ । ଯେଉଁ ଶିଶୁ ଜନ୍ମ ସମୟରେ ଯେତେ ଦୁର୍ବଳ ତା'ର ଅଭିବୃଦ୍ଧି ସେତିକି ବିଳମ୍ବିତ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟର ଉନ୍ନତି ଘଟିପାରେ । କିନ୍ତୁ ସମବୟସ୍କ ଅନ୍ୟାନ୍ୟ ଶିଶୁଙ୍କ ଅଭିବୃଦ୍ଧି ସ୍ତରକୁ ଏମାନେ ପୁରାପୁରି ଆସିପାରନ୍ତି ନାହିଁ

ଜନ୍ମର ୪ର୍ଥରୁ ୬ଷ୍ଠ ମାସ ପର୍ଯ୍ୟନ୍ତ ଏମାନଙ୍କଠାରେ ରୋଗ ନିରୋଧକ ଶକ୍ତି ଥାଏ । ଏହାପରେ କେତେକ ଶ୍ୱାସ, ବାୟୁ ଓ ଅନ୍ତ ଜନିତ ରୋଗ ଦେଖା ଦେଇଥାଏ । ଏହା ଫଳରେ ଶିଶୁମାନେ ଶୀତ ଋତୁରେ ଶ୍ୱାସ ଜନିତ ଓ ଗ୍ରୀଷ୍ମ ଋତୁରେ ବାୟୁ ଓ ଅନ୍ତ ଜନିତ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ନାନାପ୍ରକାର ପ୍ରତିଷେଧକ ଓ ନୂତନ ଔଷଧ ବ୍ୟବସ୍ଥା ସତ୍ତ୍ୱେ ଏକ ବର୍ଷ ବୟସ ମଧ୍ୟରେ ଶିଶୁ ମୃତ୍ୟୁ ହାର ଏବେ ମଧ୍ୟ ଅଧିକ ରହିଛି । କାରଣ ଶିଶୁର ସାଧାରଣ ରୋଗ ହଠାତ୍ କପରି ମାରାତ୍ମକ ହୋଇପାରେ ସେ ବିଷୟରେ ଅନେକ ପିତାମାତା ଏବେ ମଧ୍ୟ ଅଜ୍ଞ ରହିଛନ୍ତି । ଶିଶୁର କୌଣସି ରୋଗ ହେଲେ ଶିଶୁ ଚିକିତ୍ସା ବିଶେଷଜ୍ଞ ଡାକ୍ତରଙ୍କ ଦ୍ୱାରା ସଙ୍ଗେ ସଙ୍ଗେ ଚିକିତ୍ସା କରାଇବା ଉଚିତ । ପ୍ରୟୋଜନ ସ୍ଥଳେ ଶିଶୁ-ଚିକିତ୍ସାଳୟରେ ରଖାଇ ଚିକିତ୍ସା କରାଇବା ଉଚିତ । ଚିକିତ୍ସାଳୟରେ ପିତାମାତାଙ୍କୁ ଶିଶୁ ପାଖରେ ରହିବାକୁ ଅନୁମତି ଦେଲେ ସେମାନଙ୍କର ଦୁଶ୍ଚିନ୍ତା ହ୍ରାସ ପାଇଥାଏ ।

କେତେକ ଶିଶୁରୋଗ ଯଥା—ଡିପ୍‌ଥେରିଆ, ପରଟୁସିସ୍ (ହୁପିଂ କଫ୍) ଓ ଟିଟାନସ୍, ମିଳିମିଳା, ମମ୍ପ୍‌ସ୍, ଶିଶୁ ପକ୍ଷାଘାତ (Poliomyelitis)ର ସଂକ୍ରମଣରୁ ମୁକ୍ତ କରିବା ପାଇଁ ଜନ୍ମର ୩ ମାସଠାରୁ ଏକବର୍ଷ ମଧ୍ୟରେ ଟିକା ଦେବା ବ୍ୟବସ୍ଥା ରହିଛି । ଯକ୍ଷ୍ମା ଓ ଏଲର୍ଜି ପାଇଁ ମଧ୍ୟ ଟିକା ଦେବା ବ୍ୟବସ୍ଥା ଅଛି ।

କୌଣସି ମଣିଷ ସମ୍ପୂର୍ଣ୍ଣ ସୁସ୍ଥ ନୁହେଁ । କେତେକ ଅସୁସ୍ଥତା ଜନ୍ମଗତ ଓ କେତେକ ଜନ୍ମ ପୂର୍ବବର୍ତ୍ତୀ ତଥା ଜନ୍ମ ପରବର୍ତ୍ତୀ ଅସ୍ୱାସ୍ଥ୍ୟକର ପରିବେଶ ଜନିତ । ଏହି ଅସୁସ୍ଥତା ଔଷଧ ବା ଅସ୍ତ୍ରୋପଚାର ଦ୍ୱାରା ନିରାକରଣ କରାଯାଇପାରେ । ବୟସ ବଢ଼ିବା ସଙ୍ଗେ ଏହା ଭଲ ହୋଇଯିବ ନଭାବି ଡାକ୍ତରଙ୍କୁ ଦେଖାଇ ଯଥା ସମୟରେ ଚିକିତ୍ସା ବ୍ୟବସ୍ଥା ଗ୍ରହଣ କରିବା ବାଞ୍ଛନୀୟ । ଏତଦ୍‌ବ୍ୟତୀତ ଶିଶୁମାନଙ୍କୁ ନିମ୍ନଲିଖିତ କେତେକ ସାଧାରଣ ରୋଗ ହୁଏ ।

୧ । ନାକ ବନ୍ଦ ହୋଇଯିବା ଓ କାନରେ ଯନ୍ତ୍ରଣା ହେବା ଓ ଶର୍ଦ୍ଦି ।

୨ । ଶ୍ୱାସ ଜନିତ ଅସୁସ୍ଥତା ଯଥା ତଣ୍ଡିରେ ଘାଆ ହେବା ଓ କାଶ ।

୩ । ପେଟ ଯନ୍ତ୍ରଣା, ବାନ୍ତି ଓ କୋଷ୍ଠକାଠିନ୍ୟ ।

୪ । ହାଡ଼ଫୁଟି,

୫ । ରୋଗାକ୍ରାନ୍ତ ଟନ୍‌ସିଲ୍ ,

୬ । ପରିବର୍ଦ୍ଧିତ ବା ରୋଗାକ୍ରାନ୍ତ ଗଳରସ ଗ୍ରନ୍ଥି (Adenoid),

୭ । ଆଲର୍ଜି ଜନିତ ଶ୍ୱାସ କଷ୍ଟ, ଚର୍ମରେ ଫୋଟକା, ଆମବାତ ।

୮ । ହୃଦ୍‌ରୋଗ

୯ । ଯକ୍ଷ୍ମା

୧୦ । କ୍ୟାନ୍‌ସର, ବିଶେଷଭାବେ ରକ୍ତ କ୍ୟାନ୍‌ସର (Leukemia)

୧୧ । ବାତରୋଗ ଜନିତ ଜ୍ୱର ।

ରୋଗଗ୍ରସ୍ତ ମାତାଠାରୁ ସ୍ତନ୍ୟପାନ ଫଳରେ କେତେକ ରୋଗ ଶିଶୁଠାରେ ଦେଖାଦେବା ଆଶଙ୍କା ଥାଏ । ଏଭଳି ପରିସ୍ଥିତିରେ ମାଆ କ୍ଷୀର ଖୁଆଇବା ବନ୍ଦ କରି ବାହାର କ୍ଷୀର ଖୁଆଇବା ବାଞ୍ଛନୀୟ ।

ଶିଶୁର ସ୍ୱାଭାବିକ ଭାବେ ଅଭିବୃଦ୍ଧି ଘଟୁଛି କି ନାହିଁ ସେଥିପ୍ରତି ଦୃଷ୍ଟି ଦେବା ବିଧେୟ । ଶିଶୁଠାରେ ନିମ୍ନଲିଖିତ ଲକ୍ଷଣଗୁଡ଼ିକ ଥିଲେ ଅଭିବୃଦ୍ଧି ସ୍ୱାଭାବିକ ବୋଲି ବୁଝିବାକୁ ହେବ ।

୧ । ଶିଶୁ ସର୍ବଦା ପ୍ରଫୁଲ୍ଲ ରହୁଥିବ ଓ ତାର ଆଖି ଉଜ୍ଜ୍ୱଳ ଦେଖାଯାଉଥିବ ।

୨ । ମୁଣ୍ଡର କେଶ ଚକ୍ ଚକ୍ କରୁଥିବ ଓ ଶିଶୁ ବଢ଼ିବା ସଙ୍ଗେ ସଙ୍ଗେ ତାହା ବଢ଼ୁଥିବ ।

୩ । ଗୋଡ଼ ହାତର ଅସ୍ଥି ସିଧା ରହିବ ଓ ଚର୍ମ ତଳେ ପତଳା ଚର୍ବିର ଆଚ୍ଛାଦନ ସହିତ ମାଂସପେଶୀର ଅଭିବୃଦ୍ଧି ଘଟିବ ।

୪ । ଚର୍ମ ମସୃଣ ହେବ ଓ ନିର୍ଦ୍ଦିଷ୍ଟ ବର୍ଣ୍ଣ ସୃଷ୍ଟି ହେବ ।

୫ । ଦାନ୍ତଗୁଡ଼ିକ ସୁଗଠିତ, ଦୃଢ଼ ଓ ଧଳା ହେବ ।

ଶିଶୁ ନିମ୍ନଲିଖିତ କେତେକ ବ୍ୟବହାର ମାଧ୍ୟମରେ ମଧ୍ୟ ତାର ଅଭିବୃଦ୍ଧି ଜଣାପଡ଼େ ।

୧ । ଶିଶୁ ଚଞ୍ଚଳ ରହିବ ଓ ସ୍ୱାଭାବିକଭାବେ ହାତଗୋଡ଼ ହଲାଇବ ।

୨ । ଶିଶୁକୁ କ୍ଷୁଧା ହେବ ଓ ଖାଦ୍ୟର ପରିମାଣ ଠିକ୍ ରହିବ ।

୩ । ବିନା କାରଣରେ ଅଙ୍ଗଚ୍ଛିଆଭାବେ କାନ୍ଦିବ ନାହିଁ ।

୪ । ପେଟକୁ ବାୟୁ ମାରିବା, ବଦହଜମ, ବାନ୍ତି କରିବା ଓ ପେଟଶୂଳ (Colie) ଇତ୍ୟାଦି ରୋଗ ଭୋଗୁନଥିବ ।

୫ । ସୁନିଦ୍ରା ହେଉଥିବ ଓ ନିଦରୁ ଉଠି ପ୍ରଫୁଲ୍ଲ ରହୁଥିବ ।

୬ । ନୂତନ ଜିନିଷ ଦେଖି ଉତ୍ତେଜିତ ତଥା କୌତୁହଳୀ ହେଉଥିବ ।

୭ । ଖୁସି ମିଜାଜ୍‌ରେ ଥିବ ଓ ମଝିରେ ମଝିରେ ଅଳ୍ପ ଅଳ୍ପ ମୁରୁକି ହସୁଥିବ ।

ଉପରୋକ୍ତ ବିଷୟଗୁଡ଼ିକର ବ୍ୟତିକ୍ରମ ଘଟିଲେ ଶିଶୁର ଉପଯୁକ୍ତ ଅଭିବୃଦ୍ଧି ହେଉନାହିଁ ବୋଲି ବୁଝିବାକୁ ହେବ ଓ ଯଥାଶୀଘ୍ର ଡାକ୍ତର ପରାମର୍ଶକ୍ରମେ ଚିକିତ୍ସା ଆରମ୍ଭ କରିବାକୁ ହେବ । ଶିଶୁ କ୍ରମାଗତଭାବେ ରୋଗାକ୍ରାନ୍ତ ହେଲେ ତାହାର ସ୍ୱାଭାବିକ ଅଭିବୃଦ୍ଧିରେ ବ୍ୟାଘାତ ଘଟେ । ବଂଶଗତ କାରଣରୁ ମଧ୍ୟ କେତେକ ଶିଶୁଙ୍କର ସ୍ୱାଭାବିକ ମାନସିକ ଓ ଶାରୀରିକ ଅଭିବୃଦ୍ଧି ଘଟିପାରେ ନାହିଁ ।

ଶିଶୁ ଓ ଗର୍ଭବତୀ ତଥା ପ୍ରସୂତି ମାତାଙ୍କର ମୃତ୍ୟୁହାର କମିଥିଲେ ମଧ୍ୟ ଅଜ୍ଞତା ଏବଂ ଚିକିତ୍ସା ଅଭାବରୁ ବହୁ ସଂଖ୍ୟକ ଶିଶୁ, ଗର୍ଭବତୀ ତଥା ପ୍ରସୂତି ମାତା ପ୍ରାଣ ହରାଉଛନ୍ତି । ତେଣୁ ଏହାର ନିରାକରଣ ପାଇଁ ଗ୍ରାମାଞ୍ଚଳ ତଥା ସହରାଞ୍ଚଳର ବସ୍ତିବାସୀମାନଙ୍କୁ ଉପଯୁକ୍ତ ସ୍ୱାସ୍ଥ୍ୟ ଶିକ୍ଷା ଦେବା ପ୍ରୟୋଜନ । ଯଥାସମୟରେ ଡାକ୍ତରଙ୍କ ପରାମର୍ଶ ତଥା ନିର୍ଦ୍ଦେଶ ଗ୍ରହଣ କରିବା ପାଇଁ ସେମାନଙ୍କୁ ସଚେତନ କରିବା ପ୍ରୟୋଜନ ।

●